# ବାଗ୍‌ବିଶେଷ


| | |
|---|---|
| ଲେଖକ | କେଦାର ମିଶ୍ର |
| ପ୍ରକାଶକ | ସୁଧୀର ମଉଡମଣି |
| | ସୃଜନ, ଭୁବନେଶ୍ୱର |
| ସ୍ୱତ୍ୱ | କେଦାର ମିଶ୍ର |
| ପ୍ରଚ୍ଛଦ | ସରୋଜ ବଳ |
| ପ୍ରଥମ ସଂସ୍କରଣ | ରଥଯାତ୍ରା, ୨୦୦୭ |
| ମୁଦ୍ରଣ | ବିଶ୍ୱମୁକ୍ତି ପବ୍ଲିକେଶନ |
| | ସହିଦ ନଗର,ଭୁବନେଶ୍ୱର |
| ମୂଲ୍ୟ | ଟ.୬୫/- |

**BAG BISHESHA**

By **Kedar Mishra**

© **Kedar Mishra**

Published by : Sudhir Maudamani

**SRUJAN,** Bhubaneswar

Cover Design **Saroj Bal**

First Edition Rathyatra, 2007

Printed at : **Vishwamukti Publication**

Sahid Nagar, Bhubaneswar

Price **Rs. 65.-**

ତୁମ ପାଇଁ ହିଁ
ଯାତ୍ରା ପାଲଟିଗଲା ସହଯାତ୍ରା
ଧର୍ମ ସହଧର୍ମ
ଏବଂ ଜୀବନ, ସହଜୀବନ।
ଜୀବନର ସହଯାତ୍ରିଣୀ ଓ ସହଧର୍ମିଣୀ
ଶିଖା ପାଇଁ।

- କେଦାର

## ଯଦି କିଛି କହିବାକୁ ପଡିବ...

ପୃଥିବୀର କେତେଜଣ ମହାନ ଲେଖକଙ୍କ ବିଷୟରେ ଆଲୋଚନା କରିବାକୁ ଯାଇ କେତୋଟି ଗଦ୍ୟ ମୋତେ ଲେଖିବାକୁ ପଡିଛି ବୃତ୍ତିଦାୟରୁ। କବିତା ଲେଖିବାରେ ମୋର କିଛିଟା ଅନୁଭବ ଆଗରୁ ରହିଥିଲା। ଗଦ୍ୟ କ୍ଷେତ୍ରରେ ଇଏ ପ୍ରଥମ ପ୍ରବେଶ। 'ଅନୁପମ ଭାରତ'ର ଫିଚର୍ ବିଭାଗରେ ଯୋଗଦାନ ପରେ ଗଦ୍ୟ ରଚନା ଥିଲା ମୋର ବୃତ୍ତିଗତ ଆବଶ୍ୟକତା। ପତ୍ରପତ୍ରିକାରେ ପ୍ରକାଶ ପାଉଥିବା ପାରଂପରିକ ଫିଚର ଲେଖିବାର ଶୈଳୀ ଓ ତଥ୍ୟବହୁଳ ବର୍ଣ୍ଣନା ମୋତେ ଆକୃଷ୍ଟ କରି ନଥିଲା। ମୁଁ ନିଜ ପାଇଁ ବାଟଟିଏ ତିଆରି କରିବାକୁ ଚାହିଁଲି। ହେଉ ବରଂ ସଂକୀର୍ଣ୍ଣ ଓ ଛୋଟ, ବାଟଟି କିନ୍ତୁ ମୋର ନିଜସ୍ୱ।

ସୂଚନା ସମେତ ଅନୁଶୀଳନ ଓ ସମୀକ୍ଷଣର ସମନ୍ୱୟ ଘଟାଇବାର ଉପାୟଟିଏ ମୁଁ ଖୋଜିଛି ଏଇ ସବୁ ଗଦ୍ୟ ରଚନାରେ। ତତ୍ତ୍ୱନିଷ୍ଠ ବୌଦ୍ଧିକତା ଅପେକ୍ଷା ଜୀବନନିଷ୍ଠ କାବ୍ୟିକତାକୁ ଆପଣାର କରିଛି। ନିଷ୍ଠାର ସହିତ ପ୍ରୟାସ କରିଛି। ଅନେକ ପାଠକଙ୍କର ସମର୍ଥନ ଓ ସହଯୋଗ ପାଇଛି। ସୁତରାଂ ଉତ୍ସାହ ବଢିଛି। ଆତ୍ମବିଶ୍ୱାସ ଦୃଢତର ହୋଇଛି।

ଜାଣେନା, ଏହି ଗଦ୍ୟ ସବୁକୁ କ'ଣ କୁହାଯିବ, ଫିଚର ନା ପ୍ରବନ୍ଧ ? ଫିଚର ଓ ପ୍ରବନ୍ଧର ମିଶାମିଶି ଗୋଟେ ନୂଆ ପ୍ରଜାତି ବୋଲି ଏହାକୁ ଧରିନେଲେ ବି ଚଳିବ। ସିଦ୍ଧାନ୍ତ ପାଠକ ହାତରେ ଛାଡି ଦିଆଯାଉ। ଏପରି କେତୋଟି ଗଦ୍ୟ

ରଚନାକୁ ସଂକଳିତ କରିବାର ଉତ୍ସାହ ଓ ସାହସ ପ୍ରଦର୍ଶନ କରିଥିବା 'ସୃଜନ'ର ପ୍ରକାଶକ ସୁଧୀର ମଉଡ଼ମଣିଙ୍କୁ ଅଜସ୍ର ଧନ୍ୟବାଦ। ଲେଖାସବୁକୁ ସହୃଦୟତାର ସହ ପଢିଥିବାରୁ ଓ ମତାମତ ଜଣାଇଥିବାରୁ ସମଧର୍ମା ଲେଖକ ଓ ସହୃଦୟ ପାଠକଂକ ପାଖରେ ମୁଁ କୃତଜ୍ଞ। ଭିନ୍ନ ଭିନ୍ନ ସମୟରେ ଏହି ଲେଖା ସବୁକୁ ପ୍ରକାଶିତ କରିଥିବା 'ସଚିତ୍ର ବିଜୟା', 'ପଣ୍ଟିମା', 'ବିଶ୍ୱମୁକ୍ତି', 'କାବ୍ୟଲୋକ', 'ଆମରି ଗପ' ପ୍ରଭୃତି ପତ୍ରିକାର ସଂପାଦକମାନଙ୍କୁ ହୃଦୟର ସହ କୃତଜ୍ଞତା ଜଣାଉଛି। ମୋର ଲେଖକୀୟ ଜୀବନଚର୍ଯ୍ୟା ଲାଗି ପରିବାର ପ୍ରତି ଅବହେଳାକୁ ସ୍ୱୀକାରି ନେଇଥିବା ମା' ଓ ଶିଖାକୁ ମଧ୍ୟ ଧନ୍ୟବାଦ। ପରିବାରର ପ୍ରସାରିତ ସ୍ୱରୂପ ଭାବରେ ଆମର ମୁରବୀ ସୁରେଶ ଚନ୍ଦ୍ର ମହାପାତ୍ର ଓ ଜ୍ୟୋସ୍ନାରାଣୀ ମହାପାତ୍ର, ତଥା ସ୍ନେହର ଜୁବିନ୍ ମଧ୍ୟ ସ୍ମର୍ତ୍ତବ୍ୟ।

– କେଦାର ମିଶ୍ର

# ସୂଚୀପତ୍ର

# କଥା ସାହିତ୍ୟର କୁହୁକ ପୁରୁଷ
# ଗାବ୍ରିଏଲ୍ ଗାର୍ସିଆ ମାର୍କ୍ୱେଜ୍

ଆପଣ ଲେଖାଲେଖି ଆରମ୍ଭ କଲେ କେମିତି- ପ୍ରଶ୍ନଟିର ଉତ୍ତର କ'ଣ ଏତେ ସହଜ ହୋଇପାରେ ? ମାର୍କ୍ୱେଜ୍ କିନ୍ତୁ ଖୁବ୍ ସହଜରେ କହିପାରନ୍ତି- ମୁଁ ଲେଖାଲେଖି ଆରମ୍ଭ କଲି ଚିତ୍ରାଙ୍କନରୁ; ସ୍କୁଲ ଏବଂ ରଫ୍ ଖାତାରେ କାର୍ଟୁନ୍ ଅଂକାରୁ ଆରମ୍ଭ ହେଲା ସାହିତ୍ୟ। ଅଜବ ! ଅଦ୍ଭୁତ ! ଆଶ୍ଚର୍ଯ୍ୟଜନକ ! ଗାବ୍ରିଏଲ୍ ଗାର୍ସିଆ ମାର୍କ୍ୱେଜ୍‌ଙ୍କ ପରିଚୟ ଆଗରେ ବିସ୍ମୟ ସୂଚକ ଆଙ୍କିବାକୁ ପାଠକ ବାଧ୍ୟ। ପୃଥିବୀର ସବୁ କଥାକାରଙ୍କ ପରି ମାର୍କ୍ୱେଜ୍ ବି ପ୍ରେରଣା ପାଆନ୍ତି ଜୀବନର ଯଥାର୍ଥତାରୁ। ପୃଥିବୀର ବାସ୍ତବତା ତାଙ୍କ କଳ୍ପନାକୁ ଉଚ୍ଚାଟିତ କରେ। ଅଥଚ ତାଙ୍କ ବାସ୍ତବତାକୁ ସମାଲୋଚକମାନେ କହନ୍ତି କୁହୁକ ବାସ୍ତବତା (Magic Realism) ଆଉ କେହି ବି କହନ୍ତି ଗାଲୁଗପ। ମାର୍କ୍ୱେଜ୍‌ଙ୍କ ପ୍ରଶଂସକ ହେବାକୁ ଜଣେ ପାଠକ ବାଧ୍ୟ। ଯଦିଓ ଅନେକ ସମୟରେ ଲାଗିବ ଯେ ସେ ଗୋଟେ ମିଛୁଆ ଗାଈଆଳ ଟୋକାର ଗାଲୁଆମିକୁ ପଢୁଛି। ଗୁଡାଏ କପୋଳକଳ୍ପିତ ଘଟଣା ଓ ଚରିତ୍ର ପାଠକଙ୍କୁ ବିଭ୍ରାନ୍ତ କରୁଛି। ତଥାପି ମାର୍କ୍ୱେଜ୍‌ଙ୍କ ମାୟାରୁ ମୁକ୍ତି ନାହିଁ। ମାର୍କ୍ୱେଜ୍ ପାଠକର ପାଦ ଖସେଇ ଦିଅନ୍ତି ଓ ପାଠକ ବୁଡି ବୁଡି ଯାଏ ତାଙ୍କ ଅତାଳତାଳ ବର୍ଣ୍ଣନାର ମାୟାରେ।

**ଗାବ୍ରିଏଲ୍ ଗାର୍ସିଆ ମାର୍କ୍ୱେଜ୍ :**

ଆଧୁନିକ ପୃଥିବୀର କଥା ସାହିତ୍ୟର କଥା ଉଠିଲେ ଗାବ୍ରିଏଲ୍ ଗାର୍ସିଆ ମାର୍କ୍ୱେଜ୍‌ଙ୍କ କଥା ନିଶ୍ଚୟ ଉଠିବ। ତାଙ୍କର ରଚନାଶୈଳୀ ପୃଥିବୀର କଥା ସାହିତ୍ୟରେ ଏକବାର ନୂଆ, ଯଦିଓ ସେ ସବୁବେଳେ ଲାଟିନ୍ ଆମେରିକାର ପୁରୁଣା, ଅନ୍ଧାରୁଆ ଜୀବନର କଥା ହିଁ କହୁଥାନ୍ତି। ଫାଣ୍ଟାସି ପ୍ରତି ତାଙ୍କର ଆଗ୍ରହ ସ୍ୱାଭାବିକ। କାରଣ ତାଙ୍କର ପିଲାଦିନର ସେ ସବୁଠୁ ବେଶୀ ସମୟ କଟେଇଛନ୍ତି ଭୂତ ଓ ସ୍ତ୍ରୀଲୋକମାନଙ୍କ ଗହଣରେ।

ଉତ୍ତର କଲମ୍ବିଆର ଏକ ଛୋଟିଆ ସହରରେ ତାଙ୍କର ଜନ୍ମ ୬ ମାର୍ଚ୍ଚ, ୧୯୨୮ରେ। ତାଙ୍କର ପିଲାଦିନ କଟିଛି ଆରାକାଟାକାର ନିଜ ଅଜା-ଆଈଙ୍କ ଘରେ, ଗୁଡାଏ ମାଈଁ, ମାଉସୀ ଓ ଭୂତ-ପ୍ରେତଙ୍କ ଅଦୃଶ୍ୟ ରହସ୍ୟମୟ ଘେର ଭିତରେ। ୧୮୧୦ ମସିହାରୁ

କଲମ୍ବିଆ ସ୍ପେନ୍‌ଠାରୁ ସ୍ୱାଧୀନତା ହାସଲ କରିଥିଲା ଓ ଲାଟିନ୍ ଆମେରିକାର ଏହା ଥିଲା ସବୁଠୁ ପୁରୁଣା ଗଣତନ୍ତ୍ର। ଭିନ୍ନ ଭିନ୍ନ ସମୟର ଆଭ୍ୟନ୍ତରୀଣ ଯୁଦ୍ଧ ଓ ସ୍ୱେଚ୍ଛାଚାରୀ ଶାସନତନ୍ତ୍ରର ଉଦ୍‌ଭବ ଫଳରେ ଶହେବର୍ଷ ଧରି କଲମ୍ବିଆ ଏକ ଅସ୍ଥିର ଅଶାନ୍ତ ଇତିହାସର ଭୂମି ପାଲଟି ସାରିଥିଲା। ଉନବିଂଶ ଶତାବ୍ଦୀର କଲମ୍ବିଆ ଯୁଦ୍ଧ ଥିଲା ବିଦ୍ରୋହ, ରକ୍ତପାତ ଓ ନାଗରିକ ନିପାତର କରୁଣ ଚିତ୍ରଭୂମି। ୧୮୯୯ ମସିହାରେ କଲମ୍ବିଆର କୁଖ୍ୟାତ 'ହଜାରେ ଦିନିଆଁ ଯୁଦ୍ଧ' ଆରମ୍ଭ ହୋଇଗଲା। ଏଇ ଯୁଦ୍ଧରେ ପ୍ରାୟ ଲକ୍ଷେ ଲୋକ ମୃତ୍ୟୁବରଣ କରିଥିଲେ। ଯୁଦ୍ଧବିଧ୍ୱସ୍ତ କଲମ୍ବିଆର ଧ୍ୱଂସସ୍ତୁପ ଭିତରେ ମାର୍କ୍ୱେଜ୍‌ଙ୍କର ଅଜା ଥିଲେ ଅନ୍ୟତମ ନାୟକ। ଅଜାଙ୍କ ସମେତ ଏହି ଯୁଦ୍ଧର ବହୁ ଅଂଶୀଦାର ପରବର୍ତ୍ତୀ କାଳରେ ମାର୍କ୍ୱେଜ୍‌ଙ୍କ କଥା ସାହିତ୍ୟର ଆସିଛନ୍ତି ଚରିତ୍ର ହୋଇ। ତାଙ୍କର ସର୍ବାଧିକ ପ୍ରସିଦ୍ଧ ଉପନ୍ୟାସ 'ୱାନ୍ ହଣ୍ଡ୍ରେଡ୍ ଇୟର୍ସ ଅଫ୍ ସଲିଚ୍ୟୁଡ୍'ର ବୁଏନ୍ଦିଆ ପରିବାର ଏହି ଯୁଦ୍ଧର ଉପଜ।

ଅଜା କଲୋନେଲ୍ ନିକୋଲାସ୍ ରିକାର୍ଡୋ ମାର୍କ୍ୱେଜ୍ ମେଜିଆଙ୍କର ପ୍ରଭାବ ମାର୍କ୍ୱେଜ୍‌ଙ୍କୁ ପୃଥିବୀର ଶ୍ରେଷ୍ଠତମ କଥାଶିଳ୍ପୀ ହେବାରେ ସାହାଯ୍ୟ କରିଛି। କଲମ୍ବିଆର ଯୁଦ୍ଧଗ୍ରସ୍ତ ଜୀବନରେ କଲୋନେଲ୍ ମାର୍କ୍ୱେଜ୍ ଥିଲେ ଜଣେ ଜଟିଳ- ଆକର୍ଷଣୀୟ ବ୍ୟକ୍ତିତ୍ୱ। ଆରାକାଟାକାକୁ ସେ ନିଜ ହାତରେ ବସେଇଥିଲେ। ଧନପତି ଓ ଧର୍ମପତିମାନଙ୍କ ବିରୁଦ୍ଧରେ ରାଫେଲ୍ ଉରିବେଙ୍କ ନେତୃତ୍ୱରେ କର୍ଣ୍ଣେଲ୍ ମେଜିଆଙ୍କର ଯୁଦ୍ଧ ଥିଲା ବେଶ୍ ରୋମାଞ୍ଚକର। ଯୁଦ୍ଧ ସରିଗଲା ପରେ କର୍ଣ୍ଣେଲ୍‌ଙ୍କୁ ଘେରି ଯେଉଁ ନିଃସଙ୍ଗତା ରହିଥିଲା ତା'ଥିଲା ଖୁବ୍ ଦୁଃସହ। ହଜାର ଦିନର ଯୁଦ୍ଧ ପରେ ଜୀବନ ଲାଗିଲା ନିରସ, ଶୁଷ୍କ ଓ ଗତିହୀନ। କର୍ଣ୍ଣେଲ ମେଜିଆ ମାର୍କ୍ୱେଜ୍‌ଙ୍କ ଜୀବନର ଏଇ ଦିନମାନଙ୍କୁ ନେଇ ମାର୍କ୍ୱେଜ୍ ସୃଷ୍ଟି କଲେ ତାଙ୍କର ପ୍ରଧାନ ଉପନ୍ୟାସ- One Hundred Years of Solitude  No one writes to the colonel ଏବଂ Autumn of Patriarch.

ଆରକାଟକାରେ ନିଜର ପିଲାଦିନର କଥା ମନେ ପକାଇ ମାର୍କ୍ୱେଜ୍ ଲେଖିଛନ୍ତି- 'ଲୋକମାନଙ୍କ ଅପେକ୍ଷା ଆରାକାଟାକାରେ ଥିବା ସେଇ ଘର, ଯେଉଁଠି ମୋ ଅଜା, ପଣିଅଜାମାନଙ୍କ ସହ ମୁଁ ରହିଥିଲି, ଏବେ ମୋର ସ୍ମୃତିରେ ବେଶ୍ ସତେଜ ଓ ସ୍ପଷ୍ଟ। ଏବେବି ତାହା ସ୍ୱପ୍ନ ଭିତରକୁ ବାରମ୍ବାର ବାହୁଡି ଆସେ। ଏବେବି ସ୍ୱପ୍ନ ଭିତରେ ଗୋଟେ ଅହେତୁକ ଭୟ ଯାହା ମୋର ପିଲାବେଳ ସାରା ବ୍ୟାପୀ ରହିଥିଲା। ମୁଁ ଭାବେ ଯାର କାରଣ ମୋ ଜେଜେମା। ସେ କହେ ରାତି ହେଲ ଭୂତ, ପ୍ରେତ, ଡାହାଣୀମାନେ ସବୁ ସାକାର ହୋଇ ଉଠନ୍ତି।

ହଁ, ଏଇଠି ରହିଛି ମାର୍କ୍ୱେଜ୍‌ଙ୍କ କାହାଣୀର ମୂଳସୂତ୍ର। ଆଈ ଡୋନ୍ ଟ୍ରାନ୍‌କୁଇଲାନାଙ୍କ

ଯାବତୀୟ ଭୂତ କାହାଣୀ ମାର୍କ୍ୱେଜ୍‌ଙ୍କ ମନ ଭିତରେ ତିଆରି କରିଛି ବାସ୍ତବତାର ଆଉ ଏକ ଜଗତ। ଆଈଙ୍କର କାହାଣୀ ଓ ଅଜାଙ୍କର ଯୁଦ୍ଧର ସ୍ମୃତିଚାରଣ ଭିତରେ କଟିଛି ତାଙ୍କର ପିଲାଦିନ। ତାଙ୍କ ଅଜାଙ୍କର ଥିଲେ ଷୋହଳ ପିଲାଛୁଆ। ପିଲାବେଳେ ଅଜା ହିଁ ମାର୍କ୍ୱେଜ୍‌ଙ୍କୁ ଶିଖାଇଥିଲେ ଜୀବନକୁ ଗୋଟେ ଯୋଦ୍ଧା ଭାବେ ଜିଇଁବାର କଳା। ଅଜାଙ୍କର ପ୍ରତ୍ୟେକ ସ୍ମୃତି ସହ ଜଡିତ ଥିଲା କଲମ୍ବିଆ-ପରୋକ୍ଷରେ ଲାଟିନ୍ ଆମେରିକାର ଭାଗ୍ୟ।

କଲୋନେଲ୍ ମାର୍କ୍ୱେଜ୍ ଥିଲେ ଯୋଦ୍ଧା ଓ ଆବିଷ୍କାରକ। ଆଈ କିନ୍ତୁ ବଞ୍ଚୁଥିଲେ ପୃଥିବୀର ଆଦିମ ବିଶ୍ୱାସ ସହିତ। ଆଈ ମା' କହୁଥିବା ଭୂତ ପ୍ରେତର କାହାଣୀକୁ ଜମାରୁ ବିଶ୍ୱାସ ନକରିବା ପାଇଁ ଅଜା ତାଙ୍କୁ ପରାମର୍ଶ ଦେଉଥିଲେ। କହୁଥିଲେ, ତୁ ସେ ମାଇକିନାଙ୍କ କଥାକୁ ଜମାରୁ ବିଶ୍ୱାସ କରନା। ତଥାପି ମାର୍କ୍ୱେଜ୍ ଶୁଣୁଥିଲେ ସେ ସବୁ କାହାଣୀ। ଆଈମା କାହାଣୀ କହିଲାବେଳେ ତାଙ୍କ ମୁହଁରେ ଯେଉଁ ଦୃଢତା ଏବଂ ଆତ୍ମପ୍ରତ୍ୟୟ ଥିଲା, ସେଇଟା ମାର୍କ୍ୱେଜ୍‌ଙ୍କୁ ବେଶୀ ବେଶୀ ଆକର୍ଷିତ କରୁଥିଲା।

ମାର୍କ୍ୱେଜ୍‌ଙ୍କ ବାପା ଓ ମା'ଙ୍କ ପ୍ରେମକାହାଣୀ ଥିଲା ଖୁବ୍ ରୋମାଞ୍ଚକର। କଲୋନେଲ୍ ମାର୍କ୍ୱେଜ୍ ମେଜିଆଙ୍କ ଝିଅ ଲୁଇସା ସାଣ୍ଟିଆଗା ମାର୍କ୍ୱେଜ୍ ଇଗୁଆରାନ୍ ଭଲ ପାଇଥିଲେ ଗାବ୍ରିଏଲ୍ ଏଲିଜିଓ ଗାର୍ସିଆଙ୍କୁ। ଗାର୍ସିଆଙ୍କୁ ଗ୍ରହଣ କରିବାକୁ କଲୋନେଲ୍ ଜମାରୁ ପ୍ରସ୍ତୁତ ନଥିଲେ, କାରଣ କଲୋନେଲ୍ ଲିବେରାଲ୍ ହୋଇଥିବାବେଳେ ଗାର୍ସିଆ ଥିଲେ କନ୍‌ଜରଭେଟିଭ୍। ଗାର୍ସିଆଙ୍କୁ କୁହାଯାଉଥିଲା, 'ଶୁଖିଲା ପତ୍ର' ଯା'ର ପରିଚୟ ବା ଅସ୍ତିତ୍ୱ କିଛି ନଥିଲା। ତା'ପରେ ସିଏ ଥିଲେ ଟିକେ ବାତରା ସ୍ୱଭାବର। ତାଙ୍କର ଚାରୋଟି ଅବୈଧ ସନ୍ତାନ ମଧ୍ୟ ରହିଥିଲେ। ଫଳରେ କଲୋନେଲ୍ ତାଙ୍କ ଝିଅ ପାଇଁ ଏହିପରି ଏକ ପୁରୁଷକୁ ନାପସନ୍ଦ କରିଥିଲେ। ଲୁଇସା ଓ ଗାର୍ସିଆଙ୍କ ପ୍ରେମ କିନ୍ତୁ ଶକ୍ତିଶାଳୀ ଥିଲା। ସବୁ ପ୍ରକାର ବିରୋଧ ସତ୍ତ୍ୱେ ସେମାନେ ପରସ୍ପରକୁ ବିବାହ କରିଥିଲେ। ନିଜ ବାପା, ମା'ଙ୍କ ପ୍ରେମକାହାଣୀ ଆଧାରରେ ମାର୍କ୍ୱେଜ୍ ଲେଖିଥିଲେ ତାଙ୍କର ଅନ୍ୟତମ ଶ୍ରେଷ୍ଠ ଉପନ୍ୟାସ Love in the time of cholera.

ପିଲାଦିନ ମାର୍କ୍ୱେଜ୍‌ଙ୍କୁ ପରିବାର ଲୋକେ ଡାକୁଥିଲେ 'ଗାବିଟୋ', 'ଗାବୋ' ନାଁରେ। ସେ ଥିଲେ ଖୁବ୍ ଲାଜକୁଳା। ଘରର ସ୍ତ୍ରୀ ଲୋକମାନଙ୍କଠାରୁ ଭୂତ-ପ୍ରେତର କାହାଣୀ ଶୁଣି ଶୁଣି ତାଙ୍କୁ ଏତେ ଡର ଲାଗୁଥିଲା ଯେ, ସେ ବସିଥିବା ଜାଗାରୁ ଉଠିବାକୁ ଭୟ ପାଉଥିଲେ। ବନ୍ଦର ସହର ବାରନ୍‌କିଲାରେ ଆରମ୍ଭ ହେଲା ତାଙ୍କର ଆନୁଷ୍ଠାନିକ ପାଠପଢା। ସେଇ ସ୍କୁଲରେ ହିଁ ଆରମ୍ଭ ହୁଏ ତାଙ୍କର କବିତା ଲେଖା ଓ କାର୍ଟୁନ୍ ଅଂକା। ସ୍କୁଲ ସହପାଠୀମାନେ ଚିଡାଉଥିଲେ ତାଙ୍କୁ 'ବୁଢା' ବୋଲି, କାରଣ ସବୁକଥାରେ ମାର୍କ୍ୱେଜ୍ ଲାଗୁଥିଲେ ବେଶ୍ ପରିପକ୍ୱ ଓ ଚିନ୍ତାଶୀଳ। ପ୍ରାଥମିକ ଶିକ୍ଷା ପରେ ବୃତ୍ତି ପାଇଁ ଉଚ୍ଚଶିକ୍ଷା

ପାଇଁ ଗଲେ ବୋଗାଟୋ। ଏଇ ସମୟ ଭିତରେ ଜଣେ ଲେଖକ ଭାବରେ ତାଙ୍କର କିଛି କିଛି ପରିଚୟ ସୃଷ୍ଟି ହୋଇସାରିଥିଲା। ବହି ପଢିବା, ଗପ-କବିତା ଲେଖିବା ଏବଂ କାର୍ଟୁନ୍ ଆଙ୍କିବାରେ ସରୁଥିଲା ତାଙ୍କର ପଢା ସମୟ। ବାପା ମା'ଙ୍କ ଇଚ୍ଛାକ୍ରମେ ସେ ଆଇନ୍ ପଢିଲେ, ଯଦିଓ ପରବର୍ତ୍ତୀ ସମୟରେ ଆଇନ୍ ପାଠ ତାଙ୍କର କୌଣସି କାମରେ ଲାଗିଲା ନାହିଁ। ଆଇନ୍ ପଢୁଥିଲାବେଳେ ତାଙ୍କର ଦେଖାହୁଏ 'ମର୍ସିଡିଜ୍' ନାମ୍ନୀ କଳା-ଚୁପ୍‌ଚାପ୍ ଝିଅଟି ସହ। ମାର୍କ୍ୱେଜ୍‌ଙ୍କ ଦୃଷ୍ଟିରେ ସବୁଠୁ ଆକର୍ଷଣୀୟ ଏଇ ଝିଅଟି ହିଁ ହେଲା ତାଙ୍କର ଜୀବନ ସଂଗିନୀ।

### ସାହିତ୍ୟର କୁହୁକ ଆକର୍ଷଣ

ଏକଦା ଗୋଟେ ସାକ୍ଷାତକାରରେ ମାର୍କ୍ୱେଜ୍ କହିଥିଲେ Literature is nothing but carpentry. ଲେଖାଲେଖି କେବଳ ଗୋଟେ ବିଳାସ ନୁହଁ। ଟେବୁଲ୍‌ଟିଏ ତିଆରି କରିବାକୁ ବଢେଇ ଯେମିତି ପରିଶ୍ରମ କରେ ଲେଖକକୁ ମଧ୍ୟ ସେତିକି ପରିଶ୍ରମ କରିବାକୁ ପଡିଥାଏ। ପ୍ରାଉଷ୍ଟଙ୍କର ଗୋଟିଏ ମନ୍ତବ୍ୟ (ଲେଖାଲେଖିରେ ଦଶଭାଗ ପ୍ରେରଣା ତ ନବେ ଭାଗ ପରିଶ୍ରମ ଆବଶ୍ୟକ)କୁ ମାର୍କ୍ୱେଜ୍ ସମର୍ଥନ କରିଛନ୍ତି। ସେଥିପାଇଁ ଆଇନ୍‌ର ଛାତ୍ର ଥିଲାବେଳୁ ତାଙ୍କୁ ସାହିତ୍ୟ ବେଶୀ ବେଶୀ ଆକର୍ଷିତ କଲା। ସେ ନିୟମିତ କ୍ଲାସ୍‌କୁ ଗଲେ ନାହିଁ। ଏଠି ସେଠି ବୁଲିଲେ। କବିତା ଓ ଗପବହି ପଢିଲେ। ନୂଆ ନୂଆ ଲେଖକ ଓ ସାମ୍ବାଦିକଙ୍କ ସହ ମିଶିଲେ। ତାଙ୍କର କେହି ଜଣେ ବଂଧୁ ତାଙ୍କୁ ଅଷ୍ଟ୍ରିଆର ମହାନ୍ ଲେଖକ ଫ୍ରାନ୍‌ଜ କାଫ୍‌କାଙ୍କର ବହି Metamorphosis ପଢିବାକୁ ଦେଲେ। କାଫକାଙ୍କର ବର୍ଣ୍ଣନା ଶୈଳୀ ମାର୍କ୍ୱେଜ୍‌ଙ୍କୁ ଲାଗିଲା ତାଙ୍କ ଜେଜେ ମା କାହାଣୀ ପରି। As Gregor samsa awake that Morning from uneasy dreams, he found himself transformed in his bed into a gigantic insect. ଏଇ ଧାଡିଟି ପଢୁ ପଢୁ ଚମକି ପଡିଥିଲେ ମାର୍କ୍ୱେଜ୍। କାହାଣୀ ଯେ ଏମିତି ବି ଲେଖାଯାଇ ପାରିବ ଏକଥା ସେ ବିଶ୍ୱାସ କରିପାରୁ ନଥିଲେ। ତା'ପରେ କାଫ୍‌କାଙ୍କର କଥନର ରୀତି ସହିତ ସେ ମନେ ପକାଉଥିଲେ ତାଙ୍କର ଜେଜେମାଙ୍କୁ। ଜେଜେମା କାହାଣୀ କହିଲା ବେଳେ କେତେ ବିଶ୍ୱାସ ଓ ସତ୍ୟତା ତାଙ୍କ ମୁହଁରେ ଫୁଟି ଉଠୁଥିଲା, ତା' ଥିଲା କାଫ୍‌କାଙ୍କର ବର୍ଣ୍ଣନାର ସତ୍ୟତା ସହ ସମାନ। ଏବଂ ଏଇଠୁ ହିଁ ମାର୍କ୍ୱେଜ୍ ଆରମ୍ଭ କରନ୍ତି ତାଙ୍କର କାହାଣୀ ରଚନା।

ତାଙ୍କର ପ୍ରଥମ ଗପ ପ୍ରକାଶ ପାଏ ସେତେବେଳର ପ୍ରସିଦ୍ଧ ଖବରକାଗଜ 'ଏଲ୍ ସ୍ପେକ୍ଟାଡର'ର ସାହିତ୍ୟ ପୃଷ୍ଠାରେ। ବୌଦ୍ଧିକତାରେ ଭରପୂର ସେ କାହାଣୀ ସେତେବେଳେ କଲମ୍ବିଆରେ ପୁରାପୁରି ନୂଆ। ତାଙ୍କ ଲେଖା ପ୍ରକାଶିତ ହେଲାପରେ ଆଲୋଚକମାନେ

କହିଲେ, ଗପରେ ଜେମ୍‌ସ ଜଏସ୍‌ଙ୍କ ପ୍ରଭାବ ରହିଛି, ଯଦିଓ ସେତେବେଳ ସେଯାଏଁ ସେ ଜୟେସ୍‌ଙ୍କୁ ପଢି ନଥାନ୍ତି। ବୌଦ୍ଧିକତାର ସାହିତ୍ୟ ଓ ଜୀବନବୋଧର ସାହିତ୍ୟ ଏମିତି ଦୁଇଟି ପରିଧିର ଅନୁଭବ ଆସିଛି ମାର୍କେଜ୍‌ଙ୍କ ଜୀବନରେ। କାଫ୍‌କା, ଜୟେସ୍, ଫକ୍‌ନର, ଭର୍ଜିନିଆଁ ଉଲ୍‌ଫଙ୍କ ଲେଖା ପଢିଲା ପରେ ପରେ ସେ ଲେଖିଥିବା କେତୋଟି ଗପରେ ବୌଦ୍ଧିକତା ଥିଲା, କିନ୍ତୁ ଜୀବନବୋଧ ନଥିଲା। ଜୀବନକୁ ଚିହ୍ନିବା ପାଇଁ ଓ ଜୀବନକୁ ନେଇ ସାହିତ୍ୟ ରଚନା କରିବାର ନୂଆ ପର୍ଯ୍ୟାୟଟିଏ ଆରମ୍ଭ ହେଲା ୧୯୪୮ ମସିହାରୁ।

ନିଜ ଲେଖାର ଆରମ୍ଭ କାଳରେ ଦୁଇଟି ବିଶେଷ ଘଟଣା ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା ବୋଲି ସେ କହିଛନ୍ତି। ପ୍ରଥମଟି ୧୯୪୮ ମସିହାରେ କଲମ୍ବିଆର ନେତା ଗାଇତାନ୍‌ଙ୍କୁ ହତ୍ୟା କରାଗଲା। ତାଙ୍କୁ ହତ୍ୟା କରାଗଲା ପରେ ବୋଗୋଟାରେ ଭୀଷଣ ଦଙ୍ଗା ବ୍ୟାପିଗଲା। ମାର୍କେଜ୍ ନିଜେ ମଧ୍ୟ ସେଇ ଦଂଗାରେ ଅଂଶ ଗ୍ରହଣ କରିଥିଲେ। ହିଂସା ଓ ରକ୍ତପାତର ସେଇ ପ୍ରତିକ୍ରିୟାଶୀଳ ପରିବେଶ ତାଙ୍କୁ ତାଙ୍କ ଦେଶର ଯଥାର୍ଥତା ବିଷୟରେ ସଚେତନ କରିଥିଲା। ନିଜ ଦେଶର ବାସ୍ତବତାକୁ ହିଁ ତାଙ୍କୁ ଲେଖିବାକୁ ପଡିବ- ଏଇଟା ଥିଲା ତାଙ୍କର ଅନ୍ତେର୍ବୋଧ। ସେଇ ଅନ୍ତର୍ବୋଧ ହିଁ ତାଙ୍କୁ ପ୍ରେରଣା ଯୋଗାଇଛି ଲାଟିନ୍ ଆମେରିକାର ସାମାଜିକ, ରାଜନୈତିକ ବାସ୍ତବତାକୁ ଚିତ୍ରିତ କରିବା ପାଇଁ, ଭିନ୍ନ ଏକ ଶୈଳୀରେ।

୧୯୫୦-୫୧ ବେଳକୁ ମାର୍କେଜ୍ ତାଙ୍କ ମା'ଙ୍କ ସହ ଫେରନ୍ତି ପିଲାବେଳର ପ୍ରିୟଭୂମି ଆରାକାଟାକାକୁ। ସେତେବେଳକୁ ତାଙ୍କ ବୟସ ୨୨ ବର୍ଷ ଓ ସେ ଆଠ ବର୍ଷ ବୟସରୁ ଆରାକାଟାକା ଛାଡିଥିଲେ। ଏଇ ଚଉଦ ବର୍ଷ ଭିତରେ ଆରାକାଟାକା ଟିକେ ବି ବଦଳି ନଥିଲା। ମାର୍କେଜ୍ କହୁଛନ୍ତି: 'କିଛି ବି ସତରେ ବଦଳି ନଥିଲା, ମୁଁ ସତରେ ଗାଁଟିକୁ ଦେଖୁନଥିଲି- ଗାଁକୁ ଅନୁଭବ କରୁଥିଲି। ସତେ କି ମୁଁ ତାଙ୍କୁ ପଢୁଛି। ମୁଁ ଯାହା ଲେଖିବାକୁ ଚାହୁଁଛି ସବୁ ଏଇଠି ପୂର୍ବରୁ ଲେଖାହୋଇ ରହିଛି। ମୋତେ ଖାଲି ସେ ସବୁକୁ ଉତାରିବାକୁ ପଡିବ। ସେଠିକାର ଘର, ଲୋକବାକ ଏବଂ ସ୍ମୃତି ମୋ ସାହିତ୍ୟରେ ଉତ୍ତରିତ ହୋଇଗଲେ। ଏଇଟା ଥିଲା ଦ୍ୱିତୀୟ ଘଟଣା, ଯାହା ତାଙ୍କୁ ଲେଖିବା ପାଇଁ ବାଧ୍ୟ କରିଥିଲା। ଆରାକାଟାକାରୁ ଫେରି ସେ ଲେଖନ୍ତି ତାଙ୍କର ପ୍ରଥମ ଉପନ୍ୟାସ The Leaf Storm. ଏଇ ଉପନ୍ୟାସରୁ ଜନ୍ମନିଏ ପୃଥିବୀ ସାହିତ୍ୟର ସେଇ କୁହୁକ ଗାଁ 'ମାକୋଣ୍ଡୋ'। ପ୍ରଥମଥର ପାଇଁ ଏଇ ଉପନ୍ୟାସଟି ପ୍ରକାଶ ଉପଯୋଗୀ ନୁହଁ ବୋଲି ପ୍ରକାଶକ ଫେରାଇଦିଅନ୍ତି। ପରେ ୧୯୫୫ରେ ମାର୍କେଜ୍‌ଙ୍କର କେତେଜଣ ବନ୍ଧୁ ଏହାର ପାଣ୍ଡୁଲିପିକୁ ଟେବୁଲ୍ ଡ୍ରୟାରରୁ ଉଦ୍ଧାର କରି ପୁନଃପ୍ରକାଶ କରନ୍ତି।

ସାହିତ୍ୟର ନିଶା ତାଙ୍କୁ କୌଣସି ଏକ ସ୍ଥାୟୀ ବୃତ୍ତି ଦେଇପାରୁ ନଥାଏ। ବିନା ପଇସା ପତ୍ରରେ ସେ ଗୋଟେ ବେଶ୍ୟାଳୟରେ ରହୁଥାନ୍ତି ଏବଂ 'ଏଲ୍ ହେରାଲ୍‌ଡୋ' ଖବରକାଗଜରେ ନିୟମିତ ସ୍ତମ୍ଭ ଲେଖୁଥାନ୍ତି। ଜୀବନର ସବୁଠୁ ବିପର୍ଯ୍ୟସ୍ତ ସମୟରେ ଅନ୍ୟଜଣେ ବିପର୍ଯ୍ୟସ୍ତ ମଣିଷର ଜୀବନ କାହାଣୀ ମାର୍କ୍ୱେଜ୍‌ଙ୍କୁ ବଞ୍ଚାଇ ଦେଇଥିଲା। ୧୯୫୫ ମସିହାରେ କଲମ୍ବିଆର ଏକ ଜଳପୋତ ସମୁଦ୍ର ମଝିରେ ନଷ୍ଟ ହୋଇଗଲା। ଗୁଡାଏ ସୈନିକ ଏଥିରେ ମୃତ୍ୟୁବରଣ କଲେ। ଲୁଇସ୍ ଆଲେକ୍‌ଜାଣ୍ଡ୍ରୋ ଭେଲାସ୍କୋ ନାମକ ଜଣେ ମାତ୍ର ସୈନିକ ଏଥିରୁ ବର୍ତ୍ତି ଯାଇଥିଲା। ସେଇ ସୈନିକଙ୍କ ଜୀବନ କାହାଣୀ The Story of a Shipwrecked Sailor ଗଳ୍ପରେ ପ୍ରକାଶିତ।

'ଅଲ୍ ସ୍ପେକ୍ଟାଡୋର'ରେ ଲେଖିଥିବା ମାର୍କ୍ୱେଜ୍ କଲମ୍ବିଆ ସରକାରଙ୍କ କୋପ ଦୃଷ୍ଟିରେ ପଡିଥିଲେ। ପରେ ଜଣା ପଡିଥିଲା ଯେ ଉକ୍ତ ଜଳ ପୋତଟିରେ ଅବୈଧ ଭାବରେ ବିସ୍ଫୋରକ ଚାଲାଣ ହୋଇଥିଲା। କଲମ୍ବିଆ ସରକାରଙ୍କ ଠାରୁ ସୁରକ୍ଷା ଦେବା ଲାଗି 'ଅଲ୍ ସ୍ପେକ୍ଟାଡୋର' ତାଙ୍କୁ ପଠେଇ ଦେଇଥିଲା ନିଜର ୟୁରୋପ ପ୍ରତିନିଧି ଭାବରେ। ଜଣେ ସାମ୍ବାଦିକ ଓ ଲେଖକ ଭାବରେ ମାର୍କ୍ୱେଜ୍‌ଙ୍କ ଜୀବନରେ ବିଶେଷ କିଛି ଘଟିନାହିଁ। ଅନ୍ୟ ଲେଖକଙ୍କ ପରି ନିଜର ଦୁଃଖ, ଯାତନା ଓ ଯନ୍ତ୍ରଣାକୁ ପ୍ରଦର୍ଶନୀ କରିବାରେ ସେ ବିଶ୍ୱାସ ରଖନ୍ତି ନାହିଁ। ଜଣେ ସଚ୍ଚା ସାମ୍ବାଦିକ ଭାବରେ ଲାଟିନ୍ ଆମେରିକାର ପୀଡା ଓ ମାନବୀୟ ଯନ୍ତ୍ରଣାକୁ ସେ ଲିପିବଦ୍ଧ କରିଛନ୍ତି। The story of a shepwrecked Sailor, chronicle of a Death Foretold, News of a kidnapping ଇତ୍ୟାଦିରେ ଜଣେ ସାମ୍ବାଦିକର ସୃଜନଶୀଳ ରିପୋର୍ଟିଂ ଆମେ ପଢିଥାଉ। ସାହିତ୍ୟ ଓ ସାମ୍ବାଦିକତା ଯେ ବିଶେଷ ଭିନ୍ନ ନୁହେଁ- ଏକଥାର ପ୍ରମାଣ ମାର୍କ୍ୱେଜ୍‌ଙ୍କର ରଚନା।

**କୁହୁକ ସାହିତ୍ୟ   ବାସ୍ତବତାର ଭୂଚିତ୍ର**

Many years later, as he faced the firing squad, colonel, Auriliano Buendia was to remember that distant afternoon when his father took him to discover ice. ମାର୍କ୍ୱେଜ୍‌ଙ୍କର ପ୍ରସିଦ୍ଧ ଉପନ୍ୟାସ One Hundred Years of Solitude. ଆରମ୍ଭ ହୁଏ ଏମିତି। ବରଫ ଆବିଷ୍କାର ସାଧାରଣ ବାସ୍ତବତା। ସାଧାରଣକୁ ଅସାଧାରଣ କରି ବର୍ଣ୍ଣନା କରିବାର ସାହିତ୍ୟିକ ଶୈଳୀଟି Magical Realism ବା କୁହୁକ ବାସ୍ତବତା। ଦୃଶ୍ୟମାନ ଜଗତରେ ସ୍ମୃତି ହୋଇ, ରହସ୍ୟ ହୋଇ, ବିଶ୍ୱାସ-ଧାରଣା ହୋଇ ଆଉ ଏକ ଅଦୃଶ୍ୟ ଜଗତ ରହିଥାଏ। ଯୁକ୍ତି ପ୍ରବଣତାରେ ଆମେ ତାକୁ କହୁ ଅତି ରଂଜନ, ଅନ୍ଧ ବିଶ୍ୱାସ କିମ୍ବା ଗାଲୁଗପ। କୁହୁକ ବାସ୍ତବତାର ତତ୍ତ୍ୱ ଅନୁଯାୟୀ ସ୍ୱପ୍ନ ଓ କୁହୁକ ପରି ଲାଗୁଥିବା ଘଟଣାମାନଙ୍କୁ ଏକ ବୃହତ୍ତର

ଜୀବନ ସହ ଆମେ ସାମିଲ୍ କରିବାକୁ ବାଧ୍ୟ। ନଚେତ୍ ଜୀବନ ଖଣ୍ଡିତ-ଅସଂପୂର୍ଣ୍ଣ। ଅନ୍ୟାନ୍ୟ କଳାତତ୍ତ୍ୱ ପରି କୁହୁକ ବାସ୍ତବତାର ତତ୍ତ୍ୱଟି ମଧ୍ୟ ଆରମ୍ଭ ହୁଏ ଚିତ୍ରକଳାରୁ ୧୯୨୦ ମସିହାରେ। M.H Abrahamଙ୍କ A Glossary of Literary Terms ଅନୁଯାୟୀ ଏହା ହେଉଛି An ever-shifting Pattern, a sharply etched realism in representing ordinary events and descriptive details together with fantastic and dreamlike elements, as well as with materials derived from myth and fairy tales. ଲାଟିନ୍ ଆମେରିକାର ଜର୍ଜ ଲୁଇ ବୋରହେସ୍ ଏବଂ ମାର୍କ୍ୱେଜ୍, ଜର୍ମାନୀର ଗୁଣ୍ଟର ଗ୍ରାସ, ଇଂଲଣ୍ଡର ଜନ୍ ପାଓଲସ୍ ପ୍ରମୁଖ ଲେଖକ ଏହି ଧାରଣାର ପ୍ରତିଷ୍ଠିତ ସାହିତ୍ୟରଥୀ।

One Hundred Years of Solitude ବୁଏନ୍ଦିଆ ପରିବାରର ଶହେବର୍ଷର କାହାଣୀ। ଶ୍ରୀମଦ୍‌ଭାଗବତର ବଂଶାନୁଚରିତ ପରି ଏହାର ଆରମ୍ଭରେ ରହିଛି ବୁଏନ୍ଦିଆ ପରିବାରର ବଂଶବୃକ୍ଷର ବିସ୍ତୃତ ବିବରଣୀ। ଚାରି ପୁରୁଷର ପ୍ରେମହୀନ ନିଃସଙ୍ଗତା ଓ ଜୀବନ ବୋଧର କାହାଣୀ ପାଠକଙ୍କୁ ବିହ୍ୱଳ କରିପକାଏ। ଓଡ଼ିଆ ପାଠକ ପାଇଁ ତ ମାର୍କ୍ୱେଜ୍‌ଙ୍କ ଲେଖା ଲାଗିବ ଆହୁରି ଆପଣାର। ଆମର ଅବୋଲକରା କହାଣୀଠୁ ଆରମ୍ଭ କରି ମନୋଜ ଦାସଙ୍କ 'କିମ୍ବିରିଣୀ', ଚନ୍ଦ୍ରଶେଖର ରଥଙ୍କ 'ବୃକ୍ଷ ଜାତକ', ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ 'ସର୍ପଯାନ' ଇତ୍ୟାଦି ଗପର ଅଦ୍‌ଭୂତ ବାସ୍ତବତା ସହିତ 'କୁହୁକ ବାସ୍ତବତା'ର ସାମ୍ୟଦେଖି ପାଠକ କୁରୁଳି ଉଠିବ। ବୁଏନ୍ଦିଆ ପରିବାରର କାହାଣୀ ଆମର କେଉଁ ଏକ ଉପାନ୍ତ ଗଡଜାତି ଜମିଦାର ପରିବାରର କାହାଣୀ ନୁହେଁ ତ !

ଏଇ ଉପନ୍ୟାସ ଲେଖିବାର ମୂଳ ପ୍ରେରଣା ତାଙ୍କର ଅଜା-ଆଈ ଓ ଆରାକାଟକାର ଆଦିମ ରହସ୍ୟମୟ ପୃଷ୍ଠଭୂମି। ମାର୍କ୍ୱେଜ୍ କହନ୍ତି ମୋ ଜେଜେ ମାଁ କହୁଥିବା କାହାଣୀ ଶୈଳୀରେ ମୁଁ ଏଇ ଉପନ୍ୟାସଟିକୁ ଲେଖିଛି। ସେ କହୁଥିବା କାହାଣୀ ହୁଏ ତ ଅତିରଂଜିତ ଗାଲୁଗପ ମନେ ହୋଇପାରେ। ସେ କିନ୍ତୁ ଖୁବ୍ ସହଜ-ସ୍ୱାଭାବିକ ଢଙ୍ଗରେ କାହାଣୀ କହି ଚାଲିଥାଏ। ଜେଜେ ମାଁ କାହାଣୀର ଶୈଳୀଟିକୁ ଧରିପାରିଲା ପରେ ଅଠର ମାସ ଧରି ମୁଁ ପ୍ରତ୍ୟହ ଏଇ ଉପନ୍ୟାସଟିକୁ ଲେଖିଛି। ଅବଶ୍ୟ ନିଜ ସାହିତ୍ୟର ବିଶ୍ଳେଷଣ କଲାବେଳେ ମାର୍କ୍ୱେଜ୍ ଲାଗନ୍ତି ବେଶୀ ବେଶୀ କଥାକାର। ତାଙ୍କ ସହ ସାକ୍ଷାତକାର ପାଇଁ ଯାଇଥିବା ପ୍ରତ୍ୟେକ ସାମ୍ବାଦିକଙ୍କୁ ସେ ନୂଆ କାହାଣୀଟିଏ ଉପହାର ଦେଇଥା'ନ୍ତି- ଏଇଆ କହିଛନ୍ତି ଆମେରିକାର ଜଣେ ମହିଳା ସାମ୍ବାଦିକ। ନିଜ କାହାଣୀର ଧାରା ଓ ଶୈଳୀ ବିଷୟରେ ବୁଝାଇବାକୁ ଯାଇ ମାର୍କ୍ୱେଜ୍ କହନ୍ତି- "ମନେ କରନ୍ତୁ, ଆପଣ କହିବେ ଯେ ହାତୀ ଆକାଶରେ ଉଡୁଛି", ଲୋକେ ଆପଣଙ୍କୁ ବିଶ୍ୱାସ କରିବେନି। କିନ୍ତୁ ଆପଣ

କହନ୍ତୁ, ଆକାଶରେ ଚାରିଶହ ପଚିଶଟି ହାତୀ ଅଛନ୍ତି- ଲୋକେ ଆପଣଙ୍କ କଥାକୁ ଟିକେ ବିଶ୍ୱାସ କରିପାରନ୍ତି। ସ୍ୱପ୍ନ ଓ ବାସ୍ତବତା ଭିତରେ ଏକ ସୂକ୍ଷ୍ମ କଳାତ୍ମକ ଯୋଗସୂତ୍ରର ସନ୍ଧାନ କରିବା ପାଇଁ କୁହୁକ ବାସ୍ତବତାର ପରିକଳ୍ପନା ଏବଂ ଏହାର ଶ୍ରେଷ୍ଠ ରୂପକାର ଭାବରେ ମାର୍କ୍ୱେଜ୍ ନିଜର ପ୍ରତ୍ୟେକ ଲେଖାରେ ଏହି ଉଦ୍ଦେଶ୍ୟକୁ ଚରିତାର୍ଥ କରିଛନ୍ତି।

ପାଖାପାଖି ଷାଠିଏ ବର୍ଷର ସାହିତ୍ୟିକ ଜୀବନରେ ମାର୍କ୍ୱେଜ୍‌ଙ୍କ ବହି ସଂଖ୍ୟା ମାତ୍ର ପନ୍ଦର। ଯା' ଭିତରେ ରହିଛି କିଛି କାହାଣୀ, କେତୋଟି ରିପୋର୍ଟ ଏବଂ ଉପନ୍ୟାସ। Story of a shipwrecked sailor, chronicle of a Death Foretold ଏବଂ News of a Kidnapping ବହି ତିନୋଟିକୁ ରିପୋର୍ଟ ବୋଲି କୁହାଯାଇଥାଏ। ହେଲେ ଏତେ ଚମତ୍କାର ରିପୋର୍ଟ କେବଳ ମାର୍କ୍ୱେଜ୍‌ଙ୍କ ପରି ସାମ୍ବାଦିକ ହିଁ ଲେଖି ପାରନ୍ତି। No one Writes to Colonel, One Hundred Years of Solitude, The Autumn of Patriarch, In Evil Hours, Love in the Time of Cholera, The General in his Labyrinth, Of love and Other Demons, Memories of My melancholy Whore ପ୍ରଭୃତି ଉପନ୍ୟାସରେ ଗୋଟିଏ ନିର୍ଦ୍ଦିଷ୍ଟ ତତ୍ତ୍ୱର ଭିନ୍ନ ଭିନ୍ନ ସ୍ୱରୂପ ପ୍ରକଟିତ। ସର୍ବାଧିକ ଚର୍ଚ୍ଚିତ One Hundred Years of Solitudeକୁ ଉପନ୍ୟାସର ମହାକାବ୍ୟ ବୋଲି କୁହାଯାଏ। ଆଜି ପର୍ଯ୍ୟନ୍ତ ଏହି ବହିଟି ପୃଥିବୀର ସାହିତ୍ୟପ୍ରେମୀଙ୍କ ପାଇଁ ସବୁଠୁ ପ୍ରିୟ। ୪୦ ବର୍ଷ ପରେ ବି ଏହାର ଚାହିଦା ପୂର୍ବପରି ରହିଛି। ଏକଦା Newyork Times ଲେଖିଥିଲା- Gabriel Garcia Marquez's *One Hundred Years of Solitude* is the first piece of literature since the Book of Genesis that should be required reading for the entire human race.

ମାର୍କ୍ୱେଜ୍‌ଙ୍କ ଉପନ୍ୟାସର ପ୍ରତ୍ୟେକ ଚରିତ୍ର ଆମ ସମୟ ଓ ପୃଥିବୀର ନିର୍ଜନତମ ଦୁଃଖର କାହାଣୀ କହିଥାନ୍ତି। ମଣିଷର ଅସହାୟ ଅହଂବୋଧଟି ଏକ୍‌ଲା ତାଳଗଛଟିଏ ପରି ଠିଆ ହୋଇ ରହିଥାଏ ତାଙ୍କରି ଉପନ୍ୟାସରେ। One Hundred years of Solitudeର ବୁଏନ୍ଦିଆ ପରିବାରର ସେଇ ଅଦ୍‌ଭୁତ ଚରିତ୍ରମାନଙ୍କ ବିଷୟରେ ଟିକେ ଟିକେ ଆଲୋଚନା କଲାପରେ ଆମେ ଉପସଂହାର ଆଡକୁ ଯିବା। ଜୋସ୍ ଆର୍କାଡିଓ ବୁଏନ୍ଦିଆ, ପିଏତ୍ରୋକ୍ରୋସ୍ପି, ଆରିକାନିଓ ସେଗୁନ୍ଦୋ, ଆରିଲୋନିଓ ବିବିଲୋନିଆ, ଉର୍ସୁଲା ଅମାରାଣ୍ଟା, ଫର୍ଣ୍ଣାନ୍ଦୋ, ରେମେଡ଼ିଓସ୍ ଦି ବିଉଟି ଇତ୍ୟାଦି ଚରିତ୍ର, ବିଚକ୍ଷଣ ଭାବରେ ଅଦ୍ଭୁତ। ଜୋସ୍ ଆର୍କାଦିଓ ବୁଏନ୍ଦିଆ, ମାକୋଣ୍ଡୋ ଗାଁର ପ୍ରତିଷ୍ଠାତା। ଜଣେ ଉଦ୍‌ଭାବକର ନିଶା ଓ ସୃଜନଶୀଳ ପାଗଳାମୀ ତାଙ୍କ ଚରିତ୍ରର ପ୍ରଧାନ ଗୁଣ। ସେ ମାକୋଣ୍ଡାକୁ ଏମିତି

ଗଢ଼ିଥିଲେ ଯେମିତି ପ୍ରତ୍ୟେକ ଘର ନଈଠୁ ସମାନ ଦୂରରେ ରହିବ ଓ ପ୍ରତ୍ୟେକ ଘର ସମାନ ଭବରେ ଖରା ଦ୍ୱାରା ଆକ୍ରାନ୍ତ ହେବ। ତାଙ୍କର ପାଗଳାମିକୁ ନିୟନ୍ତ୍ରଣରେ ରଖିବା ପାଇଁ ତାଙ୍କ ପୁଅ ଆରିଲିଆନୋ ବୁଏନ୍ଦିଆ କ'ଣ କଲେ ପଢ଼ନ୍ତୁ- He was about to finish off the rest of the house when Aurilliano asked the neighbours for help. Ten men needed to get him down, fourteen to tied him up, twenty to drag him to the chestnut tree in the courtyard ଆପଣ ଏମିତି ଅଦ୍ଭୁତ ବାସ୍ତବତାର କାହାଣୀ ଆଉ କା'ଠୁ ଶୁଣିଥିଲେ କି ? ପୁନଶ୍ଚ ଜୋସ୍ ଆର୍କାଡ଼ିଓ ବୁଏନ୍ଦିଆ ମଲାପରେ ସେମାନେ ଦେଖିଲେ ଯେ ଆକାଶରୁ ଟିକିଟିକି ହଳଦିଆ ଫୁଲର ବର୍ଷା ହେଉଛି। ସାରାରାତି ହୋଇଥିବା ଫୁଲର ବର୍ଷା ଝଡରେ ଛାତ ସବୁ ଫୁଲରେ ଭର୍ତି ହୋଇଗଲା। ଦୁଆର ଜାମ୍ ହୋଇଗଲା ଫୁଲରେ। ବାହାରେ ଶୋଇଥିବା ପଶୁମାନେ ଫୁଲର ଆଘାତରେ ମରିଗଲେ। ରାସ୍ତାରେ ଏତେ ଫୁଲ ଜମା ହୋଇଥିଲା ଯେ ଶକାଳକୁ ଶବ ଶୋଭାଯାତ୍ରା ପାଇଁ କୋଡି-କୋଦାଳ ଧରି ରାସ୍ତା ସଫା କରିବାକୁ ପଡିଲା। ଏହାକୁ ପାଠକେ କୁହୁକ ବାସ୍ତବତା ବୋଲି କହିବେ ନା ଗାଲୁଗପ, ଏହା ସେମାନଙ୍କ ଉପରେ ନିର୍ଭର କରେ। ହେଲେ ଆପଣ ଯଦି ମାର୍କ୍ୱେଜ୍‌ଙ୍କୁ ପଚାରିବେ ସେ ସ୍ପଷ୍ଟ ଓ ଶାଣିତ ସ୍ୱରରେ କହିବେ ଏହା ହିଁ ସତ୍ୟ।

One Hundred Years of Solitude ରେ ରେବିକା ମାଟି ଖାଇ ଖାଇ ବଂଚିଥାଏ। ନାୟକ ଆରିଲିଆନୋ ବୁଏନ୍ଦିଆଙ୍କ ଛାତିରେ ଗୁଳି ବାଜି ବାହାରିଥାଏ ଅଥଚ ତାଙ୍କ ଶରୀରର କୌଣସି ଅଂଶ କ୍ଷତିଗ୍ରସ୍ତ ହୋଇ ନଥାଏ। ରେମେଡ଼ିଓସ୍ , ଦି ବିଉଟିକୁ ମାର୍କ୍ୱେଜ୍ ଏଇ ପୃଥିବୀର ଚରିତ୍ର ନୁହଁ ବୋଲି କହନ୍ତି। ଅଦ୍ଭୁତ ଆଶ୍ଚର୍ଯ୍ୟଜନକ ଚରିତ୍ରମାନଙ୍କ ପୃଷ୍ଠଭୂମିରେ ସବୁଠୁ ବଡ କଥା ହେଲା ଲାଟିନ୍ ଆମେରିକାର ଦୁଃସହ ବାସ୍ତବତା। କୁହୁକର ବଳୟ ଭିତରେ ଜଳୁଥାଏ ଲାଟିନ୍ ଆମେରିକାର ଛୋଟ ଛୋଟ ଦେଶ ଓ ସେମାନଙ୍କ ଯନ୍ତ୍ରଣାଦାୟକ ଇତିହାସ। ୮, ଡିସେମ୍ବର, ୧୯୨୮ରେ ନୋବେଲ ଅଭିଭାଷଣରେ ମାର୍କ୍ୱେଜ୍ ଏଇ ବ୍ୟାପକ ବାସ୍ତବତା (Oversized Reality) ର କଥା କହନ୍ତି। "ଆମେ ଦେଖିଛୁ ପାଞ୍ଚଟି ଯୁଦ୍ଧ ଓ ସତରଟି ସାମରିକ ବିଦ୍ରୋହ। ସେଥିରୁ ଜନ୍ମ ନେଇଥିବା ଏକ ପିଶାଚ ଏକଛତ୍ରବାଦୀ ଈଶ୍ୱରଙ୍କ ନାଁରେ ଲାଟିନ୍ ଆମେରିକୀୟ ଆଦିମ ଅଧିବାସୀଙ୍କୁ ଗଣହତ୍ୟା କରିଛି। ଯା'ଭିତରେ ୨କୋଟି ଲାଟିନ୍ ଆମେରିକୀୟ ଶିଶୁ ଜନ୍ମ ହେବାର ବର୍ଷେ ଭିତରେ ମୃତ୍ୟୁବରଣ କରିଛନ୍ତି। ଶହେ କୋଡିଏ ହଜାର କୁଆଡେ କୁଆଡେ ନିଖୋଜ। ଅସୁମାରୀ ସ୍ତ୍ରୀ ଲୋକଙ୍କୁ ଗର୍ଭବତୀ ଥିବା ଅବସ୍ଥାରେ ଗିରଫ କରାଯାଇଛି ଓ ଆର୍ଜେଣ୍ଟିନାର ଜେଲ୍ ଗୁଡିକରେ ସେମାନେ ପିଲାଜନ୍ମ କରିଛନ୍ତି।

ସେ ପିଲାମାନଙ୍କ ଖୋଜ୍ ଖବର କେହି ରଖିନାହିଁ। ସାରା ମହାଦେଶରେ ଦୁଇଶହ ହଜାର ଲୋକ ମୃତ୍ୟୁବରଣ କରିଛନ୍ତି। ଏହି ସବୁ ଭୟାନକ ବାସ୍ତବତାର ଜୀବନ୍ତ ଚିତ୍ର ମାର୍କ୍ୱେଜ୍‌ଙ୍କୁ ପ୍ରେରଣା ଯୋଗାଇଛି ପୃଥିବୀର ସାହିତ୍ୟରେ ମଣିଷର ସ୍ୱପ୍ନ ଓ ଜୀବନ ସଂଗ୍ରାମକୁ ଏକ ଭିନ୍ନ ଶୈଳୀରେ ରୂପାୟିତ କରିବା ପାଇଁ।

ଆମ ସମୟ ଓ ପୃଥିବୀର ସାହିତ୍ୟରେ ମାର୍କ୍ୱେଜ୍ ଯେ ଏକ ତୁଙ୍ଗତମ ବ୍ୟକ୍ତିତ୍ୱ ଏଥିରେ ସନ୍ଦେହର ଅବକାଶ ନାହିଁ। ତଥାପି ବେଳେବେଳେ ତାଙ୍କୁ ବି ସମାଲୋଚନାର ଶରବ୍ୟ ହେବାକୁ ପଡିଥାଏ। ସାହିତ୍ୟର ମୁକ୍ତ ପରିବେଶରେ ସମାଲୋଚନା ବିନା ସାର୍ଥକତା କାହିଁ ! ଗତ ଶତାବ୍ଦୀର ଶ୍ରେଷ୍ଠ ବହି ଭବରେ One Hundred Years of Solitude ଏବଂ ଶ୍ରେଷ୍ଠ ଚରିତ୍ର ଭାବେ Colonel Auriliano Buendiaଙ୍କ ନାମ ଘୋଷଣା କଲାପରେ ଟେଲିଗ୍ରାଫ୍ ସମୀକ୍ଷକ ଜୋନାଥନ୍ ବେଟେ ଲେଖିଥିଲେ- The book is so in love with its own cleverness that it is profoundly unread-able, It is generally credited with inaugurating the genre of "Magic Realism" novels which combine the Matter-of-act narrative style of conventional realisitc fiction with fantastic nonsence such as levitation and alchemy. ଜୋନାଥନଙ୍କର ଏହି ମନ୍ତବ୍ୟ ମାର୍କ୍ୱେଜ୍‌ଙ୍କ ନିଜସ୍ୱ ୱେବ୍‌ସାଇଟ୍ www.macondo.comରେ ଏକ ପ୍ରମୁଖ ସ୍ଥାନ ଲାଭ କରିଛି। ଜଣେ ସଚ୍ଚା ଲେଖକ ତା'ର ପାଠକ ଓ ଆଲୋଚକ ଉଭୟଙ୍କୁ ଭଲ ପାଇବାର ଇଏ ଏକ ଚମତ୍କାର ଦୃଷ୍ଟାନ୍ତ।

ସଂପ୍ରତି କ୍ୟାନ୍‌ସରରେ ଆକ୍ରାନ୍ତ ଗାବ୍ରିଏଲ୍ ଗାର୍ସିଆ ମାର୍କ୍ୱେଜ୍ ତାଙ୍କର ସାହିତ୍ୟ ଓ ସାମ୍ବାଦିକତାର ଯାତ୍ରା ଅବ୍ୟାହତ ରଖିଛନ୍ତି। ତାଙ୍କର ଆତ୍ମ ଜୀବନୀ living to Tell the Tale ଏବଂ ଶେଷ ଉପନ୍ୟାସ Memories of My Melianchloy whores ଇତି ମଧ୍ୟରେ ପ୍ରକାଶିତ ହୋଇ ସାରିଛି। ତେବେ କୁହୁକ ବାସ୍ତବତାର ଏହି ମହାନ୍ ଶିଳ୍ପକାରଙ୍କ କଲମରୁ ପୃଥିବୀ ଆହୁରି ଆଲୋକ, ଆହୁରି କୁହୁକର ଅପେକ୍ଷା ରଖେ।



# ମୃତ୍ୟୁ ଓ କବିତାର ପ୍ରେମରେ ଏକ ପାଗଳି ଝିଅ : ସିଲ୍‌ଭିଆ ପ୍ଲାଥ୍

'ମୁଁ ମରିଯିବାକୁ ଚାହୁଁଛି ଓ ମରିବା ପାଇଁ, ମୋର ସାହସ ଅଛି କି ନା ପରୀକ୍ଷା କରି ଦେଖୁଛି।' ବାରମ୍ବାର ଏକଥା ଘୋଷଣା କରିଛନ୍ତି ସିଲ୍‌ଭିଆ ପ୍ଲାଥ୍। ଆମେରିକାର ବେଶ୍ ଖ୍ୟାତନାମା କବି, ପ୍ରଖ୍ୟାତ ବ୍ରିଟିଶ୍ କବି ଟେଡ୍ ହ୍ୟୁଗ୍‌ସଙ୍କ ପ୍ରେମିକା, କବିତା ଲେଖିବା ଅପେକ୍ଷା କବିତାକୁ ଜିଇଁବାର ଆଧାର ମନେ କରୁଥିବା ଗୋଟେ ପାଗଳୀ ଝିଅ, ଯା'ର ନାଁ ସିଲ୍‌ଭିଆ। ଜନ୍ମ ୨୭, ଅକ୍ଟୋବର, ୧୯୩୨ରେ, ମୃତ୍ୟୁ ୧୧ ଫେବୃୟାରୀ ୧୯୬୩ - ମୃତ୍ୟୁ ନୁହେଁ ତ ଆତ୍ମହତ୍ୟା। ମାତ୍ର ୩୧ ବର୍ଷର ଛୋଟିଆ ଜୀବନରେ ପ୍ରେମ, ମୃତ୍ୟୁ ଓ କବିତାର ଖୁବ୍ ଲମ୍ବା ଏକ ଦୀର୍ଘଶ୍ୱାସ ସିଏ। ଭାବ ପ୍ରବଣତା ଓ ଭାଙ୍ଗି ପଡୁଥିବା ସ୍ୱପ୍ନ ଭିତରେ ଆତଙ୍କିତ - ଅଣ ନିଃଶ୍ୱାସୀ ଗୋଟେ ପାଗଳିନୀ ପ୍ରେମିକା। ସିଲ୍‌ଭିଆଙ୍କର ଏକ ପ୍ରସିଦ୍ଧ କବିତାର ନାଁ ହେଉଛି, 'ଗୋଟେ ପାଗଳୀ ଝିଅର ପ୍ରେମ କବିତା'। ସତରେ ଗୋଟେ ଅଜବ ଝିଅ ସେ। ଯେଉଁ ବୟସରେ ଆମେରିକାନ୍ ଝିଅମାନେ ପ୍ଲେ ସ୍କୁଲରେ କଣ୍ଢେଇ ଖେଳିବା କଥା, ସେ ବୟସରୁ କବିତା ଲେଖିଲେ ସିଲ୍‌ଭିଆ। ମାତ୍ର ପାଞ୍ଚବର୍ଷ ବୟସରେ ଲେଖନ୍ତି ପ୍ରଥମ -ପରିପୂର୍ଣ୍ଣ କବିତା।

ସିଲ୍‌ଭିଆଙ୍କର ଜନ୍ମ ପରେ ତାଙ୍କ ବାପା ଓଟୋ ପ୍ଲାଥ୍‌ଙ୍କ ଦେହ ଭୀଷଣ ଖରାପ ହୁଏ। ଓଟୋ ଥିଲେ ଗୋଟେ ବିଚିତ୍ର ସ୍ୱଭାବର ମଣିଷ। ତାଙ୍କୁ ଲାଗିଲା ସେ ଲଙ୍ଗ୍ କ୍ୟାନ୍‌ସରରେ ପୀଡିତ। ତେଣୁ ତାଙ୍କ ବଞ୍ଚିବାର କୌଣସି ଆଶା ନାହିଁ। ପ୍ରାୟ ୫/୭ ବର୍ଷ ଧରି ରୋଗାକ୍ରାନ୍ତ ରହିବା ପରେ ହଠାତ୍ ଜଣେ ଡାକ୍ତର ତାଙ୍କୁ ଦେଖିଲେ ଓ ଘୋଷଣା କଲେ ଯେ ରୋଗଟି କ୍ୟାନ୍‌ସର ନୁହେଁ। ବହୁବର୍ଷ ଧରି ମଧୁମେହ ରୋଗରେ ପୀଡିତ ହୋଇ ଏବଂ ପ୍ରକୃତ ଚିକିତ୍ସା ନକରି ତାଙ୍କ ଜୀବନ ସରିବାକୁ ଆସୁଛି। ୧୯୪୦ ମସିହା ନଭେମ୍ବର ମାସରେ ଓଟୋ ପ୍ଲାଥ୍ ମୃତ୍ୟୁବରଣ କଲେ। ସେତେବେଳକୁ ସିଲ୍‌ଭିଆଙ୍କ ବୟସ ମାତ୍ର ୮ ବର୍ଷ। ବାପାଙ୍କ ମୃତ୍ୟୁ ପରେ ଗଭୀର ମର୍ମାହତ ସିଲ୍‌ଭିଆ କହିଥିଲେ- ମୁଁ

ଭଗବାନଙ୍କ ସହିତ ଆଉ କେବେ କଥା ହେବି ନାହିଁ।

ତା'ର ବର୍ଷେ ପରେ ୧୯୪୧ ମସିହାରେ ସିଲଭିଆଙ୍କ ପ୍ରଥମ କବିତା ପ୍ରକାଶ ପାଏ 'ବୋଷ୍ଟନ୍ ହେରାଲ୍‌ଡ'ର ଶିଶୁ କବିତା ପ୍ରଭାଗରେ। କବିତାର ବିଷୟ ବସ୍ତୁ ହେଲା, ଗ୍ରୀଷ୍ମ ରାତିରେ ଦେଖିଥିବା ଓ ଶୁଣିଥିବା ଘଟଣା। ସିଲଭିଆଙ୍କ ପିଲାଦିନ ବିତିଛି ବିଶ୍ୱଯୁଦ୍ଧର କରାଳ ଛାୟାରେ। ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନ଼ଘଟା ଭିତରେ ସିଲଭିଆଙ୍କ ପରିବାର ବିସ୍ଥାପିତ ହୋଇଛନ୍ତି। ତାଙ୍କ ମା' ଅରେଲିଆ ସୋବର ବୋଷ୍ଟନ ବିଶ୍ୱବିଦ୍ୟାଳୟରେ ଚାକିରି ପାଇଲା ପରେ ସିଲଭିଆଙ୍କୁ ପାଠ ପଢିବାକୁ ପଡିଛି ସାଧାରଣ ସମୟର ଦୁଇବର୍ଷ ପୂର୍ବରୁ। ବାପାଙ୍କ ମୃତ୍ୟୁ, ବିଶ୍ୱଯୁଦ୍ଧର ଘନଘଟା, ବିସ୍ଥାପନ ତଥା ନିଃସଙ୍ଗତା ସିଲଭିଆଙ୍କ ମାନସିକ ସ୍ଥିତିକୁ ସବୁବେଳେ ଚାପଗ୍ରସ୍ତ କରି ରଖିଛି। ଲାଗିଛି, ସେ ପୃଥିବୀର ସବୁଠୁ ଏକଲା ଝିଅ। ସିଲଭିଆ ଥିଲେ ଭୀଷଣ ଏକଜିଦିଆ, ରାଗୀ ଏବଂ ସଂଦେହୀ। ତାଙ୍କୁ ଲାଗୁଥିଲା ସିଏ ବଞ୍ଚିବା ପାଇଁ ଆସିନାହାନ୍ତି। କବିତା ଲେଖିବା ସହିତ ଆତ୍ମହତ୍ୟା କରିବା ପାଇଁ ପ୍ରୟାସ ଥିଲା ତାଙ୍କର ସବୁଠୁ ବଡ ଇଚ୍ଛା। ସିଲଭିଆଙ୍କୁ  ଲାଗିଥିଲା ସେ ଚାହିଁଥିଲେ ତାଙ୍କ ବାପାଙ୍କୁ ବଞ୍ଚାଇ ପାରିଥାନ୍ତେ। ସେ ବୋଧହୁଏ ଜାଣି ଜାଣି ଆତ୍ମହତ୍ୟା କଲେ। ମାନସିକ ସ୍ତରରେ ଏହି ଭାବନା ତାଙ୍କୁ ବେଶ୍ ଆତ୍ମହତ୍ୟାପ୍ରବଣ କରିଥିଲା। ହାଇସ୍କୁଲରେ ପଢୁଥିବା ବେଳେ ନିଜର ଚିତ୍ର ଏବଂ କବିତା ସବୁ ସେ ସ୍କୁଲ ବୁଲେଟିନ୍‌ମାନଙ୍କରେ ପ୍ରକାଶନ ପାଇଁ ଦେଉଥିଲେ। ଏହି ସମୟରେ 'ଦି ଆଟଲାଣ୍ଟିକ୍ ମନ୍ଥଲି'ରେ ପ୍ରକାଶ ପାଏ ତାଙ୍କର ଏକ ଲେଖା 'ଏ ରିଜନେବଲ ଲାଇଫ୍ ଇନ୍ ଏ ମେଡ୍ ୱାର୍ଲ୍‌ଡ'। ଯଥାର୍ଥତା ସହ ମଣିଷର ଅନ୍ତରୀଣ ଆଧ୍ୟାତ୍ମିକତା ସଂପର୍କରେ ଅତ୍ୟନ୍ତ ଗଭୀର ତତ୍ତ୍ୱସବୁ ରହିଥିଲା ଏହି ଛୋଟିଆ ଝିଅର ଲେଖାରେ। ସ୍କୁଲରେ  ସିଲଭିଆ ଥିଲେ ଜଣେ ଖୁବ୍ ଭଲ ଛାତ୍ରୀ। ୧୯୫୦ ବେଳକୁ ତାଙ୍କର ଗୁଡାଏ କବିତା ଭିନ୍ନ ଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇସାରିଛି। ଅବଶ୍ୟ ଆମେରିକାରେ ପତ୍ରପତ୍ରିକା ଗୁଡିକ ତାଙ୍କ ପାଖକୁ କିଛି କମ୍ ରିଜେକ୍‌ସନ ଚିଠି ଦେଇନାହାଁନ୍ତି।

## ମୃତ୍ୟୁ : ସିଲଭିଆଙ୍କର ଅନ୍ତରଂଗ ବାନ୍ଧବୀ

"To annihilate the world by annihilation of one's self is the deluded height of desperate egoism. The simply way out of the little brick dead ends we scratch our nails against..... I want to kill myself, to escape from responsiblity, to crawl back abjectly into the womb.

୧୯୫୩ ବେଳକୁ ସିଲ୍‌ଭିଆ ଜଣେ କବି ଭାବରେ କିଛି ନାଆଁ କରିସାରିଲେଣି। ଛୋଟ ଛୋଟ କଥାରେ ଭାଙ୍ଗି ପଡିବା, ପ୍ରଚୁର ମାନସିକ ଚାପରେ ରହିବା ଏବଂ ହତାଶ ହୋଇଯିବା ଥିଲା ସିଲ୍‌ଭିଆଙ୍କ ଗୁଣ। ଥରେ ପ୍ରଖ୍ୟାତ ଲେଖକ ଡିଲାନ୍ ଥୋମାସ୍‌ଙ୍କୁ ଭେଟି ନପାରି ସେ ଏତେ ବ୍ୟତିବ୍ୟସ୍ତ ହୋଇପଡିଥିଲେ ଯେ, ତାଙ୍କୁ ଯେମିତି ହେଉ ଭେଟିବା ପାଇଁ ସେ ଦିନ ଦିନ ରାତି ରାତି ହୋଟେଲ ଆଗରେ ଅପେକ୍ଷା କରିଥିଲେ। ବେଳେବେଳେ ଖୁବ୍ ଅଦ୍ଭୁତ କାଣ୍ଡ କାରଖାନା କରୁଥିଲେ ସିଲ୍‌ଭିଆ। ଦିନେ ରାତିରେ ହୋଟେଲ ରୁମ୍‌ରୁ ତାଙ୍କର ସବୁତକ ପୋଷାକ ଖୋଲି ସେ ଫୋପାଡି ଦେଇଥିଲେ। ତାଙ୍କର ପ୍ରସିଦ୍ଧ କବିତା 'ପାଗଳି ଝିଅର ପ୍ରେମ ଗୀତ' ସେତେବେଳେ ଖୁବ୍ ଆଦର ଲାଭ କରିସାରିଥାଏ। ତାଙ୍କର ଏବଂ ତାଙ୍କ ବିଷୟରେ ଅନେକ ଲେଖା ବାହାରିଥାଏ ଇଂରାଜୀ ପତ୍ରପତ୍ରିକାରେ। ଏହି ସମୟରେ ହାରଭାର୍ଡ ସମର ସ୍କୁଲରେ ଏକ ନିର୍ଦ୍ଦିଷ୍ଟ ବିଭାଗ ପାଇଁ ତାଙ୍କୁ ଆଡମିଶନ ମିଳେ ନାହିଁ। ଏହି ସାମାନ୍ୟ କଥାରେ ସେ ଏତେ ବିଚଳିତ ହୋଇପଡନ୍ତି ଯେ, ତାଙ୍କୁ ଲାଗେ ଜୀବନ ଏକ ନିରବଚ୍ଛିନ୍ନ ହତାଶା। ରାତି ରାତି ଧରି ସେ ଶୋଇପାରନ୍ତି ନାହିଁ। ତାଙ୍କର ଏକମାତ୍ର ନିଶା ଥାଏ 'ଆଇ ୱାଣ୍ଟ ଟୁ ଡାଏ'। ମରିବା ପାଇଁ ଗୋଟେ ଅଦ୍‌ଭୁତ ଅଭିଳାଷ ତାଙ୍କୁ ପାଗଳିନୀ କରିଥାଏ। ତେଣୁ ସିଲ୍‌ଭିଆଙ୍କ କବିତାରେ ମୃତ୍ୟୁର ଚିତ୍ର ଖୁବ୍ ଅନ୍ତରଂଗ। ସତେକି ମୃତ୍ୟୁ ତାଙ୍କର ପ୍ରିୟ ବାନ୍ଧବୀ।

୨୪ ଅଗଷ୍ଟ ୧୯୫୩ରେ ସିଲ୍‌ଭିଆ ଏକା ସାଙ୍ଗରେ ୪୦ଟି ନିଦ ବଟିକା ଗିଳି ପକାଇଲେ ଏବଂ ଘରର ଏକ ନିଭୃତ କୋଣରେ ପଡି ରହିଲେ। ଘର ଲୋକ ଜାଣିପାରିଲେ ନାହିଁ ସିଲ୍‌ଭିଆ ଗଲେ କୁଆଡେ। ସେ ନିଖୋଜ ହେବାର ଖବର ସମସ୍ତ ପ୍ରମୁଖ ସମ୍ବାଦପତ୍ରରେ ବାହାରିଲା। ଜଣେ ପ୍ରତିଭାଶାଳୀ ଯୁବ କବୀଙ୍କ ବିଷୟରେ ବେଶ ଆତୁର ଥିଲେ ବୁଦ୍ଧିଜୀବୀମାନେ। ତାର ଦୁଇଦିନ ପରେ ସିଲ୍‌ଭିଆଙ୍କୁ ଆବିଷ୍କାର କରାଗଲା ବାନ୍ତି ସରସର ଅବସ୍ଥାରେ। ସେ ମୂର୍ଚ୍ଛିତ ହୋଇ ପଡି ରହିଥିଲେ। ମରିବାର ଚେଷ୍ଟା ତାଙ୍କୁ ମରିବାକୁ ଦେଇନଥିଲା। ତାଙ୍କର ବାନ୍ଧବୀ ଓଲିଭ୍ ହିଜିନ୍ ପ୍ରାଉଟି ତାଙ୍କୁ ବେଶ୍ ସାହାଯ୍ୟ କରିଥିଲେ ଏହି ଅସମୟରେ। ଏକ ପ୍ରସିଦ୍ଧ ପାଗଳ ଗାରଦରେ ତାଙ୍କର ଚିକିତ୍ସା କରାଯାଇଥିଲା। ତାଙ୍କୁ ଇଲେକ୍ଟ୍ରି ସକ୍ ମାଧ୍ୟମରେ ଚିକିତ୍ସା କରାଗଲା।

୧୯୫୪ ବେଳକୁ ପୁଣି ଏକ ନୂଆ ବ୍ୟକ୍ତିତ୍ୱ ଏବଂ ନୂଆ କବିତା ନେଇ ସେ ପାଠକମାନଙ୍କ ପାଖରେ ପହଞ୍ଚିଲେ। ଏହି ସମୟଟି ହିଁ ଥିଲା ତାଙ୍କ ଜୀବନର ସବୁଠୁ ସୁନ୍ଦର ବସନ୍ତ। ୧୨୦୦ ଡଲାରର ଏକ ବୃତ୍ତି ତାଙ୍କୁ ମିଳିଥିଲା। କବିତା ପାଇଁ ଏକ ପୁରସ୍କାର ଓ ପରୀକ୍ଷାରେ ଭଲ ଗ୍ରେଡ୍ ମଧ୍ୟ। ଏହି ସମୟରେ ଜଣେ ବୁଢା ଲୋକଙ୍କ

ସହିତ ତାଙ୍କ ସଂପର୍କ ଘନୀଭୂତ ହେଉଥିଲା। ଦିନେ ସେଇ ବୁଢା ପ୍ରେମିକ ଜଣକ ତାଙ୍କୁ ଧର୍ଷଣ କରି ଏମିତି ଆଘାତ କରିଥିଲା ଯେ, ତାଙ୍କ ମସ୍ତିଷ୍କରେ ବେଶ୍ ବଡ଼ କ୍ଷତ ହୋଇଥିଲା।

## ଟେଡ୍ ହ୍ୟୁଗସ୍ : ଧୂସର ସ୍ୱପ୍ନର ଅର୍ଦ୍ଧନାୟକ

କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ସିଲଭିଆଙ୍କ ସହ ଦେଖାହୁଏ ଇଂଲଂଡର ଯୁବକବି ଟେଡ୍ ହ୍ୟୁଗସ୍ଙ୍କ ସହ। କେମ୍ବ୍ରିଜ୍ର ଏକ ନୂତନ ସାହିତ୍ୟ ପତ୍ରିକା 'ସେଣ୍ଟ ବୋତଲଫ୍ସ ରିଭ୍ୟୁ'ର ଏକ ପାର୍ଟିରେ ତାଙ୍କର ଦେଖାହୁଏ ବିଗ୍, ଡାର୍କ, ହଙ୍କିବୟ, ଦ ଓନଲି ଓ୍ୱାନ୍ ହ୍ୟୁଗସ୍ଙ୍କ ସହ। ସେତେବେଳେ ହ୍ୟୁଗସ୍ ଥିଲେ ଜଣେ ଖ୍ୟାତନାମା ପ୍ରେମିକ। ବହୁ ଯୁବତୀଙ୍କ ସହ ତାଙ୍କ ସଂପର୍କ ବିଷୟରେ ସିଲଭିଆ ଭଲ ଭାବରେ ଜାଣିଥିଲେ। ତଥାପି ତାଙ୍କ ଭିତରେ ଆରମ୍ଭ ହୋଇଥିଲା ପ୍ରେମ ସଂପର୍କ। ଲୁଚାଛପାରେ ଟେଡ୍ ଓ ସିଲଭିଆ ବିବାହ କରନ୍ତି। ବିବାହର ପ୍ରଥମ କେତୋଟି ଦିନ ବେଶ୍ ଭଲ ଭାବରେ ବିତାଇଥିଲେ ସେମାନେ। ଚିର ଦୁଃଖିନୀ ସିଲଭିଆଙ୍କ ଜୀବନରେ ପ୍ରେମର ଏଇ ସୁନ୍ଦର ଦିନମାନେ ଫୁଟିଥିଲେ ଶାରଦୀୟ ଆକାଶର ତାରା ଭଳି। ସେ ସମୟର ପ୍ରତିଟି ସଂଧ୍ୟାରେ ସମୁଦ୍ର ଉପର ଆକାଶରେ ତାରାମାନେ ଭାସୁଥିଲେ ବୋଲି କହନ୍ତି ସିଲଭିଆ। ଏହି ସମୟରେ ସିଲଭିଆ ଲେଖିଥିଲେ ତାଙ୍କର କବିତା- ଫିଏସ୍ତା ମେଲୋନ୍ସ, ଏଲିକାଣ୍ଟ ଲୁଲାବି, ଦି ଗୋରିଂ, ଦି ବେଗର୍ସ, ସ୍ପାଇଡର୍ସ, ରାଇମ୍, ଏପିଟାଫ୍ ଫର୍ ଫାୟାର ଏଣ୍ଡ ଫ୍ଲାଓ୍ୱାର ଇତ୍ୟାଦି। ପ୍ରେମିକ ଟେଡ ଏବଂ ସ୍ୱାମୀ ଟେଡ୍ଙ୍କ ଭିତରେ ଥିଲା ପ୍ରଚୁର ପାର୍ଥକ୍ୟ। ଯେଉଁ ପ୍ରତିଭାବାନ କବିଙ୍କୁ ସିଲଭିଆ ବିବାହ କରିଥିଲେ, ଯାହାପାଇଁ ସେ ନିଜର କବିତା କ୍ୟାରିୟରକୁ ବାଜି ଲଗାଇଥିଲେ, ସେ ଥିଲେ ଜଣେ ଭିନ୍ନ ମଣିଷ। ଏକଦା ସିଲଭିଆ ତାଙ୍କର ଜଣେ ବାନ୍ଧବୀଙ୍କୁ କହିଥିଲେ- ହନିମୁନ୍ ସମୟରେ ଟେଡ୍ କୁଆଡେ ତାଙ୍କ ତଣ୍ଟିକୁ ମାଡି ଧରିଥିଲେ। ବଡ କଷ୍ଟରେ ପ୍ରାଣ ବଞ୍ଚାଇଥିଲେ ସିଲଭିଆ। ଟେଡ ଥିଲେ କ୍ରୁର ସ୍ୱଭାବର। ଟେଡ୍ଙ୍କ ପରିବାର ମଧ୍ୟ ସିଲଭିଆଙ୍କ ପ୍ରତି ଭଲ ବ୍ୟବହାର ପ୍ରଦର୍ଶନ କରିନଥିଲେ। ଟେଡ୍ଙ୍କ ସାନଭଉଣୀ ସିଲଭିଆଙ୍କୁ ମାନସିକ ସ୍ତରରେ ବାରମ୍ବାର ନିର୍ଯ୍ୟାତିତ କରି ଆସୁଥିଲେ। ଇତିମଧ୍ୟରେ ଟେଡ୍ଙ୍କର ଯଶ ଓ ଖ୍ୟାତି ବୃଦ୍ଧି ପାଉଥିବା ବେଳେ ସିଲଭିଆ ପ୍ରଚୁର ମାନସିକ ଚାପର ସମ୍ମୁଖୀନ ହୋଇ ନିଜର କାବ୍ୟ ଜୀବନରେ କ୍ରମଶଃ ଜଡ ପାଲଟି ଯାଉଥିବାର ଅନୁଭବ କରୁଥିଲେ। ଫେବୃୟାରୀ ୧୯୫୭ରେ ଟେଡ୍ଙ୍କର କବିତା ବହି *'ଦି ହକ୍ ଇନ୍ ଦି ରେନ୍'* ପ୍ରକାଶ ପାଇଲା। ଏହି ଖୁସିକୁ ଜଣେ ଶ୍ରଦ୍ଧାଶୀଳ ସ୍ତ୍ରୀ ଭାବରେ ସିଲଭିଆ ପାଳନ କରିଥିଲେ। ଆମେରିକାରେ ମଧ୍ୟ ଟେଡ୍ଙ୍କ କବିତା ଖୁବ୍ ପ୍ରସିଦ୍ଧି ଲାଭ

କରିଥିଲା । ଏଇଠୁ ଆରମ୍ଭ ହେଲା ସ୍ୱାମୀ-ସ୍ତ୍ରୀଙ୍କ ଭିତର ଈର୍ଷା ଓ ଅହଂକାରର ବିବାଦ। ନିଜ ଦେଶରେ ସ୍ୱାମୀଙ୍କର ଖ୍ୟାତି ବଢ଼ି ଚାଲିଥିବା ବେଳେ ସିଲ୍‌ଭିଆ ନିଜକୁ ମନେ କରୁଥିଲେ ଅବହେଳିତ। ତାଙ୍କ କାବ୍ୟ ପ୍ରତିଭାକୁ ସଠିକ୍ ଭାବେ କେହି ଚିହ୍ନିପାରୁ ନାହାନ୍ତି ଏବଂ ତାଙ୍କ କବିତା ଉପଯୁକ୍ତ ସମ୍ମାନ ପାଉନାହିଁ ବୋଲି ସେ ସବୁବେଳେ ଅନୁଭବ କରୁଥିଲେ। ଭୟଙ୍କର ହୀନମନ୍ୟତା ଏବଂ ଅଭିମାନବୋଧରେ ସିଲ୍‌ଭିଆ କ୍ରମେ ଭାଙ୍ଗିପଡୁଥିଲେ। ମାନସିକ ଚାପ ସମେତ ଶାରୀରିକ କଷ୍ଟ ବି କମ୍ ନଥିଲା ସିଲ୍‌ଭିଆଙ୍କର। ଆମେରିକାରେ ରହୁଥିବା ସମୟତକ ତାଙ୍କ ପାଇଁ ଥିଲା କବିତାଠୁ ଦୁରେଇ ରହିବାର ଦିନ। କବିତା ଲେଖିପାରୁ ନଥିବାରୁ ପ୍ରଚୁର ଯନ୍ତ୍ରଣା ଅନୁଭବ କରୁଥିଲେ ସେ।

ସେ ୧୯୫୮ ବେଳକୁ କିଛି କିଛି କବିତା ପୁଣି ଲେଖିବାକୁ ଆରମ୍ଭ କଲେ। ତାଙ୍କର କବିତା ପ୍ରକାଶିତ ହେଲା ପ୍ରଖ୍ୟାତ 'ଦି ନ୍ୟୁୟର୍କର' ପତ୍ରିକାରେ। ଇତିମଧ୍ୟରେ ତାଙ୍କର ପିଲାପିଲି ମଧ୍ୟ ହୋଇ ସାରିଥିଲେ। ଗର୍ଭବତୀ ଥିବା ସମୟରେ କିଛି କମ୍ ମାନସିକ ଯନ୍ତ୍ରଣା ଭୋଗିନାହାନ୍ତି ସିଲ୍‌ଭିଆ। ବ୍ୟକ୍ତିଗତ ଜୀବନର ହତାଶା, ଯନ୍ତ୍ରଣା, ସ୍ୱପ୍ନ ଭଙ୍ଗର ପୀଡ଼ା, ସ୍ୱାଧୀନତା ପାଇଁ ଅଭୀପ୍‌ସା, କବିତାର ଶିଖରକୁ ଛୁଇଁବାର ଅଭିଳାଷ ଏବଂ ସର୍ବୋପରି ଜୀବନକୁ ନିଜ ବାଗରେ ବଞ୍ଚି ନପାରୁଥିବାର ଦାରୁଣ ଅବସ୍ଥା ତାଙ୍କ କବିତାମାନଙ୍କରେ ଫୁଟି ଉଠୁଥାଏ। ବିଂଶ ଶତାବ୍ଦୀର ସେ ଏମିତି ଏକ କବି ଯିଏ ନିଜ ଜୀବନକୁ କବିତାର ଭାଷାରେ ପୁରାପୁରି ଢାଳି ଦେଇଛନ୍ତି। ତାଙ୍କ କବିତାକୁ ଛୁଇଁ ହୁଏ। ପ୍ରତ୍ୟେକ କବିତାର ଧାଡ଼ିରେ ବାରି ହୋଇପଡେ ତାଙ୍କର ତତଲା ଦୀର୍ଘଶ୍ୱାସ। ମୃତ୍ୟୁ ପ୍ରତି ତାଙ୍କର ଅଦ୍‌ଭୁତ ପ୍ରେମ ଆକର୍ଷଣ କବିତାକୁ ଦିଏ ଜୀବନର ନୂଆ ଏକ ଅର୍ଥ। ତେଣୁ କୁହାଯାଏ, ସିଲ୍‌ଭିଆ ପ୍ଲାଥ୍ କବିତା ଲେଖିନଥିଲେ, କବିତାରେ ବଞ୍ଚିଥିଲେ।

## ଶେଷ କବିତା : ଆତ୍ମହତ୍ୟା

୧୯୬୨ରେ ଜନ୍ମ ହୁଏ ତାଙ୍କର ଆଉ ଏକ ପିଲା। ବାରମ୍ବାର ଗର୍ଭବତୀ ହେବା ଫଳରେ ତାଙ୍କ ମାନସିକ ଚାପ ଆହୁରି ବଢ଼ି ବଢ଼ି ଚାଲେ। ତଥାପି ତାଙ୍କ ସାନପୁଅ ଜନ୍ମ ହେଲା ପରେ ସେ କିଛି ଭଲ କବିତା ଲେଖିଥିଲେ। ସେହି ୬୨ ମସିହାରେ ଏକା ପ୍ରକାଶ ପାଇଥିଲା ତାଙ୍କର କବିତା ବହି *'ଦି କଲୋସସ୍ ଏଣ୍ଡ ଅଦର ପୋଏମ୍‌ସ'*। ବହିଟି କିନ୍ତୁ ସେତେ ବେଶୀ ଆଦୃତ ହେଲାନାହିଁ। ଇତିମଧ୍ୟରେ ସ୍ୱାମୀ ଟେଡ୍‌ଙ୍କ ଦୌରାତ୍ମ୍ୟ ମଧ୍ୟ କିଛି କମ୍ ନଥିଲା। ଜୀବନତମାମ୍ ଟେଡ଼୍ ଥିଲେ ଜଣେ ବିଟପୁରୁଷ। ଅନେକ ନାରୀଙ୍କ ସହ ତାଙ୍କର ପ୍ରେମ ସଂପର୍କ ରହିଥିଲା। ମାନସିକ ଚାପ ଏବଂ ହତାଶା ଫଳରେ

ଦିନେ ସିଲ୍‌ଭିଆ ତାଙ୍କର ଗୁଡାଏ କବିତା ଏବଂ ଉପନ୍ୟାସ 'ଦି ବେଲଜାର'ର ପରବର୍ତ୍ତୀ ଖଣ୍ଡର ପାଣ୍ଡୁଲିପିକୁ ପୋଡି ପକାଇଥିଲେ। ଆଜି ଲାଗୁଛି, କେତେ ବିରାଟ କ୍ଷତି ଥିଲା ପୃଥିବୀର ସାହିତ୍ୟ ପାଇଁ ସେହି ଘଟଣାଟି।

ସିଲ୍‌ଭିଆଙ୍କର ବହୁ ବିଚିତ୍ର ବିଚିତ୍ର ରୁଚି ଥିଲା। ଜ୍ୟୋତିଷ ଶାସ୍ତ୍ର ଏବଂ ଗୁହ୍ୟବିଦ୍ୟା ପ୍ରତି ତାଙ୍କର ଆଗ୍ରହ ଥିଲା ପ୍ରଚୁର। କେମ୍ବ୍ରିଜ୍‌ରେ ଟେଡ୍ ଓ ସେ ମିଶି ଗୋଟିଏ ଓଝା ବୋର୍ଡ ମଧ୍ୟ ଗଠନ କରିଥିଲେ। ଏହା ମାଧ୍ୟମରେ ଭଲ ଆୟ କରିପାରିବେ ବୋଲି ସିଲ୍‌ଭିଆ ଭାବୁଥିଲେ। ତାହା କିନ୍ତୁ ସମ୍ଭବ ହୋଇପାରି ନଥିଲା। ବହୁ ସ୍ୱପ୍ନ ଭାଙ୍ଗିଛି ସିଲ୍‌ଭିଆଙ୍କର ଜୀବନରେ। ଭଙ୍ଗା ସ୍ୱପ୍ନର ଶ୍ମଶାନରେ ଠିଆ ହୋଇ ସେ କବିତା ଲେଖିଥିଲେ। ପରିଶେଷରେ ୧୧ ଫେବୃୟାରୀ ୧୯୬୩ ଦିନ ରୋଷେଇ ଘରର ଦ୍ୱାର ବନ୍ଦ କରି ସେ ନିଜକୁ ପୋଡିଦେଲେ ଓଭେନ୍ ଗ୍ୟାସ୍‌ରେ। ମରିବା ପୂର୍ବରୁ ଲେଖିଥିଲେ, "outcast on a cold star, unable to feel anything but an awful helpless numbness. I look down into the warm, earthy world. Into a nest of lovers' beds, baby cribs, meal tables, all the solid commerce of life in this earth and feel apart, enclosed in a wall of glass."

ମୃତ୍ୟୁ ପରେ ପୃଥିବୀର ଆଖି ଖୋଲିଥିଲା। ସାରା ପୃଥିବୀର କବିତାପ୍ରେମୀ ଭଲ ପାଇଥିଲେ ସିଲ୍‌ଭିଆଙ୍କ କବିତାକୁ। ଏବେ ବି ଆମେରିକାର ଇତିହାସରେ ବେଶ୍ ଚର୍ଚ୍ଚିତ ଏବଂ ପ୍ରିୟ ସିଲ୍‌ଭିଆ ପ୍ଲାଥ୍‌ଙ୍କ କବିତା। ତାଙ୍କ ସଂଗୃହିତ କବିତା ପୁସ୍ତକ ୧୯୮୨ ମସିହାରେ ପ୍ରଖ୍ୟାତ ପୁଲିଜର ପୁରସ୍କାର ଲାଭ କରିଥିଲା ମୃତ୍ୟୁର ୯ ବର୍ଷ ପରେ। ଏହା ପ୍ରମାଣିତ କରେ ସିଲ୍‌ଭିଆଙ୍କ କବିତାର ବ୍ୟାପ୍ତି ଓ ପ୍ରଭାବ। ଟେଡ୍ ହ୍ୟୁଗସ ବଞ୍ଚିଥିଲେ ବହୁଦିନ। ଅଥଚ ତାଙ୍କର କୁଖ୍ୟାତି ଥିଲା ଯେ ତାଙ୍କୁ ଯିଏ ବିବାହ କରିଥିଲା ସେ ଅବଶ୍ୟ ଆତ୍ମହତ୍ୟା କରୁଥିଲା।। ସିଲ୍‌ଭିଆଙ୍କ ଦୀର୍ଘଶ୍ୱାସ କେବେ ବି ଶାନ୍ତିରେ ରହିବାକୁ ଦେଇନଥିଲା ଟେଡ୍ ହ୍ୟୁଗସ୍‌ଙ୍କୁ।



# କ୍ରୋଧର କବିତା ଓ ନୀରବତାର ନାଟକ
# ହାରୋଲ୍ଡ ପିଣ୍ଟର

A man bows down before another man.
and sucks his lust.

ଆମେରିକା ଓ ଇଂଲଣ୍ଡର ସ୍ୱାର୍ଥ୍ୟ ଆଧାରିତ ସଂପର୍କ ଉପରେ ଜଣେ ଅକ୍ଷରଶିଳ୍ପୀର ତୀର୍ଯ୍ୟକ୍ ବୟାନ୍ ଇଏ। ୟାଙ୍କି ବା ଆମେରିକାନ୍ ସେନାର ପ୍ରଚଣ୍ଡ ଆକ୍ରମଣରେ ଧୂଳି ଓ ଧୂଆଁର ପିଣ୍ଡୁଳାଏ ମାନଚିତ୍ର ପାଲଟି ଯାଇଥିବା ଇରାକ୍ ପ୍ରତି କରୁଣା ଓ ସମବେଦନା ତଥା ଇଂଲଣ୍ଡ ଓ ଆମେରିକା ପ୍ରତି ପ୍ରଚଣ୍ଡ ଘୃଣା, ଜଘନ୍ୟ ଦୋ' ଅକ୍ଷରି ଗାଳି, ୨୦୦୩ ମସିହାରେ ପୃଥିବୀର କବିତାକୁ ହାରୋଲ୍ଡ ପିଣ୍ଟରଙ୍କ ସବୁଠୁ ବଡ ଅବଦାନ। ଲଣ୍ଡନ ବାସିନ୍ଦା ହାରୋଲ୍ଡ ପିଣ୍ଟର ବ୍ରିଟିଶ ସରକାରଙ୍କ ଇରାକ୍ ବିରୋଧୀ ଅଭିଯାନକୁ ଭୀଷଣ ବିରୋଧ କରିଥିଲେ। ସେ ଥିଲେ ୟୁରୋପର ଅନ୍ୟତମ ସଚ୍ଚା ଓ ସାହସୀ ଲେଖକ, ଯିଏ ଆମେରିକାନ୍ ରାଷ୍ଟ୍ରପତିଙ୍କୁ କହିଥିଲେ, 'ଗଣ ହତ୍ୟାକାରୀ' ଓ ଟୋନି ବ୍ଲେୟାରଙ୍କୁ କହିଥିଲେ, 'ଜଣେ ପ୍ରବଞ୍ଚକ ମୂର୍ଖ' ତଥା 'ଭଡ଼ାଟିଆ ଖ୍ରୀଷ୍ଟିଆନ ଗୁଣ୍ଡା'। ଆମେରିକାନ୍ ନେତୃତ୍ୱ ବିରୁଦ୍ଧରେ ଏବଂ ବୁଶ୍‌ଙ୍କ ତଥାକଥିତ ଗଣତନ୍ତ୍ର ବିରୁଦ୍ଧରେ ପିଣ୍ଟରଙ୍କ କ୍ରୋଧ ବେଶ୍ ଜଣାଶୁଣା। ଫେବୃୟାରୀ, ୨୦୦୩ରେ ମାତ୍ର ଚାରିଧାଡ଼ିର କବିତା 'Democracy'ରେ ଯେଉଁ ଭାଷାରେ, ଯେତିକି ସାହସିକତାର ସହ ସେ ତଥାକଥିତ ଗଣତନ୍ତ୍ରର ଅଧିନାୟକମାନଙ୍କୁ 'ଦୋ'ଅକ୍ଷରୀ ପ୍ରୟୋଗ କରିଛନ୍ତି, ତାହା ଅତୁଳନୀୟ। 'ଗାଲିଚା ତଳେ ପୋତି ହୋଇ ପଡୁଥିବା ଗଣତନ୍ତ୍ର' ପ୍ରତି ଖୁବ୍ ଦୟାଶୀଳ କବି, ନାଟ୍ୟକାର, ଅଭିନେତା, ସମାଜ କର୍ମୀ, ଚଳଚ୍ଚିତ୍ର ନିର୍ମାତା-ନିର୍ଦ୍ଦେଶକ ହାରୋଲ୍ଡ ପିଣ୍ଟର।

୨୦୦୫ ମସିହା ପାଇଁ ସାହିତ୍ୟରେ ନୋବେଲ୍ ପୁରସ୍କାର ଘୋଷଣା ହେଲା ପରେ ଅନ୍ତତଃ ଜର୍ଜବୁଶ୍ ଓ ଟୋନି ବ୍ଲେୟାରଙ୍କ ଆଖିରୁ ନିଦ ହଜି ଯାଇଥିବ। ହାରୋଲ୍ଡ ପିଣ୍ଟରଙ୍କୁ ସୁଇଡିସ୍ ଏକାଡେମୀ ନୋବେଲ ପୁରସ୍କାର ପ୍ରଦାନ କରିବାର ନିଷ୍ପତ୍ତି, ପୃଥିବୀର

ଗଣତନ୍ତ୍ର ପ୍ରେମୀ ଓ ଯୁଦ୍ଧବିରୋଧୀ ଜନତାଙ୍କୁ ଆହ୍ଲାଦିତ କରିଛି। ସୁଇଡିଶ ଏକାଡେମୀ ତାଙ୍କ ପୁରସ୍କାର ଘୋଷଣାପତ୍ରରେ କହିଛନ୍ତି, ହାରୋଲ୍‌ଡ ପିଣ୍ଟରଙ୍କୁ ଚଳିତବର୍ଷ ନୋବେଲ୍ ପୁରସ୍କାର ପ୍ରଦାନ କରାଯାଉଛି କାରଣ Mr. Pinter uncover the precipice under everyday Prattle and forces entry into opressior's closed rooms. ବୋଧେ ବିଗତ ଦଶବର୍ଷରେ ନୋବେଲ ଘୋଷଣାନାମାରେ ଇଏ ସବୁଠୁ ଶକ୍ତିଶାଳୀ ବାକ୍ୟ। ଜଣେ ଅତ୍ୟନ୍ତ ଶକ୍ତିଶାଳୀ ଶବ୍ଦଶିଳ୍ପୀ ପାଇଁ ପ୍ରଶଂସାର ସାଧାରଣ ବାକ୍ୟଟିଏ ଅନାବଶ୍ୟକ-ଅଦରକାରୀ। ସୁଇଡିସ୍ ଏକାଡେମୀ ପ୍ରାୟତଃ ରାଜନୈତିକ ତୁଷ୍ଟି କରଣରେ ବିଶ୍ୱାସ ରଖିଥାଏ। କିନ୍ତୁ ପୃଥିବୀର ରାଜନୈତିକ ମାନଚିତ୍ରକୁ ପ୍ରଭାବିତ କରୁଥିବା ଦୁଇ ପ୍ରମୁଖ ସତ୍ତା କେନ୍ଦ୍ର ଆମେରିକା ଓ ଇଂଲଣ୍ଡର ନେତୃତ୍ୱକୁ ଖୁଲ୍ଲମଖୁଲ୍ଲା ବିରୋଧ କରୁଥିବା ହାରୋଲ୍‌ଡ ପିଣ୍ଟର ଓ ମହମ୍ମଦ ଏଲ୍‌ବରାଦିଙ୍କୁ ସାହିତ୍ୟ ଓ ଶାନ୍ତି ପାଇଁ ନୋବେଲ୍ ପ୍ରଦାନ କରାଯିବା ଏକ ଆଶ୍ଚର୍ଯ୍ୟଜନକ ଘଟଣା। ପୁରସ୍କାର ଘୋଷଣା ପୂର୍ବରୁ ପିଣ୍ଟରଙ୍କ ନାଁ ଚର୍ଚ୍ଚାରେ ନଥିଲା। ବରଂ ତୁର୍କୀର ଔପନ୍ୟାସିକ ଓର୍‌ହାନ୍ ପମୁକ, ସିରିଆର କବି ଏଡୋନିସ୍ ଏବଂ ଆମେରିକାନ୍ ଲେଖକ ଜଏସ କାରୋଲ୍ ଓଭିଡ୍‌ଙ୍କ ନାମ ବିଶେଷ ଚର୍ଚ୍ଚାରେ ରହିଥିଲା। ଲଣ୍ଡନର ଏକ ପ୍ରଚଣ୍ଡ କ୍ରୋଧୀ ବୁଢାଲୋକ ଜଣକ ନୋବେଲ ପୁରସ୍କାର ପାଇବେ, ଏକଥା ଥିଲା ସମସ୍ତଙ୍କ କଳ୍ପନା ବାହାରେ। ସମସ୍ତଙ୍କୁ ଚକିତ କରି ନୋବେଲ ଫାଉଣ୍ଡେସନ୍ ତରଫରୁ ମାରିକା ଗ୍ରିସେଲ୍ ୧୩, ଅକ୍ଟୋବର, ୨୦୦୫ ସକାଳେ ପିଣ୍ଟରଙ୍କୁ ପୁରସ୍କାର ପାଇଁ ଅଭିନନ୍ଦନ ଜଣାଇଥିଲେ। ପ୍ରାୟ ୫ ମିନିଟ୍‌ର ଟେଲିଫୋନ୍ ଆଳାପରେ ପ୍ରଚୁର କଥା କହୁଥିବା ପିଣ୍ଟର କିଛି କହିବାକୁ ଚାହିଁ ନଥିଲେ। ସେ ଥିଲେ ଅବାକ୍-ଆନନ୍ଦିତ।

## ହାରୋଲ୍‌ଡ ପିଣ୍ଟର : ଜୀବନ ଗାଥା

ହାରୋଲ୍‌ଡ ପିଣ୍ଟରଙ୍କ ନିଜସ୍ୱ ୱେବ୍ ସାଇଟ୍ www.haroldpinter.org ରେ ତାଙ୍କର ଜୀବନଗାଥା ମାତ୍ର ଗୋଟିଏ ବାକ୍ୟରେ ସୀମିତ। '୧୦, ଅକ୍ଟୋବର, ୧୯୩୦ରେ ତାଙ୍କର ଜନ୍ମ ପୂର୍ବ ଲଣ୍ଡନରେ ଏବଂ ତାଙ୍କର ପତ୍ନୀ ଲେଡି ଆଣ୍ଟୋନିଆଁ ଫ୍ରେଜର'। ବାସ୍, ଏତିକି ମାତ୍ର। ଜଣେ ନାଟ୍ୟକାର ଭାବରେ ନିଜ ଅସ୍ତିତ୍ୱର ସଂକଟରୁ ନାଟକ ପାଇଁ କଥାବସ୍ତୁ ସଂଗ୍ରହ କରିଛନ୍ତି। ନାଟକ ପରି ତାଙ୍କ ଜୀବନ କାହାଣୀ। ଋଷୀୟ-ଇହୁଦୀ ପିତାମାତାଙ୍କ ସନ୍ତାନ ହାରୋଲ୍‌ଡ ଜୀବନ ତମାମ୍ ପ୍ରତିବାଦ ଓ ପ୍ରତିରୋଧକୁ ଆପଣେଇ ନେଇଛନ୍ତି ଜୀବନବୋଧ ଭାବରେ। ତାଙ୍କ ଭିତରର ପ୍ରତିବାଦୀ ଓ ବିଦ୍ରୋହୀ

ପୁରୁଷକୁ ଉତ୍ସାହିତ ନକରିବା ଲାଗି ତାଙ୍କର ବାପା-ମା ଯଥେଷ୍ଟ ପ୍ରୟାସ କରିଛନ୍ତି। କିନ୍ତୁ ବଦଳେଇ ପାରିନାହାନ୍ତି ପିଣ୍ଟରଙ୍କୁ। ତାଙ୍କରପିତାମାତାଙ୍କୁ ହାରୋଲ୍‌ଡଙ୍କ ଇଂରାଜୀ ଶିକ୍ଷକ କହିଥିଲେ, "Don't try to change Harold, If he wants to go to Prison, he will go, whether you like it or not." ଏବଂ ସତକୁ ସତ ଯୁଦ୍ଧ ବିରୋଧି ମନ୍ତବ୍ୟ ଯୋଗୁଁ ତାଙ୍କୁ ତରୁଣ ବୟସରୁ ଜେଲ୍ ଯିବାକୁ ପଡିଥିଲା ଓ ଅଶୀ ପାଉଣ୍ଡ ଜୋରିମାନା ଦେବାକୁ ପଡିଥିଲା।

ନାଟୋର ବଲ୍‌କାନ ବିରୋଧି ଯୁଦ୍ଧ ଏବଂ ଇରାକ୍ ଆକ୍ରମଣ ଉପରେ ସବୁଠୁ କଡା ସ୍ୱର ଥିଲା ପିଣ୍ଟରଙ୍କର। ବୋଧେ ନିଜ ଜୀବନକୁ ସିଏ ପରିଣତ କରି ଦେଇଛନ୍ତି ପ୍ରତିବାଦରେ। ୧୯୫୭ ମସିହାରେ ପ୍ରଥମ ନାଟକ The Room ପ୍ରକାଶିତ ହୁଏ। ସେହି ବର୍ଷ ତାଙ୍କର ବହୁ ଚର୍ଚ୍ଚିତ ନାଟକ "The Birthday Party"ର ପ୍ରକାଶନ ତାଙ୍କୁ ଆଣିଦିଏ ପ୍ରଚୁର ଖ୍ୟାତି। ନିଜେ ହିଁ ନିଜର ଆଦର୍ଶ ସିଏ। ଏକାନ୍ତ ଭାବରେ ଏକାକୀ ଓ ଚିନ୍ତନରେ ପୂରାପୂରି ମୌଳିକ ତାଙ୍କର ନାଟକ। ୩୫ଟି ନାଟକ ଓ ୨୨ଟି ଚଳଚ୍ଚିତ୍ରର ଚିତ୍ରନାଟ୍ୟ ରଚନା, ୫୦ରୁ ଊର୍ଦ୍ଧ୍ୱ ନାଟକର ନିର୍ଦ୍ଦେଶନା, ୧୯୭୪ରେ "Butley" ଚଳଚ୍ଚିତ୍ରର ନିର୍ମାଣ, ୬ଟି ଟେଲି କାର୍ଯ୍ୟକ୍ରମ, ୭ଟି ଚଳଚ୍ଚିତ୍ର ଓ ଅନେକ ମଞ୍ଚ ନାଟକରେ ଅଭିନୟ ଏବଂ ଅଜସ୍ର ରେଡ଼ିଓ କାର୍ଯ୍ୟକ୍ରମର ପ୍ରସ୍ତୁତି। ହାରୋଲ୍‌ଡ ପିଣ୍ଟରଙ୍କର ସି.ଭି.ରେ ତାଙ୍କର ସୃଜନଶୀଳ ଅବଦାନର ଗଣନା ଅସମ୍ଭବ। ୧୯୭୦ରେ ସେକ୍ସପିୟର ପୁରସ୍କାରଠୁ ଆରମ୍ଭ କରି ୨୦୦୫ରେ ନୋବେଲ୍ ପୁରସ୍କାର ପର୍ଯ୍ୟନ୍ତ ଅଜସ୍ର ପୁରସ୍କାର ତାଙ୍କ ହାତକୁ ଆସିଛି, ତାଙ୍କର ପ୍ରତିରୋଧି ପ୍ରତିଭାର ସ୍ୱୀକୃତି ସ୍ୱରୂପ।

## ସଂଳାପ ମଧ୍ୟବର୍ତ୍ତୀ ନୀରବତା : ପିଣ୍ଟରଙ୍କ ନାଟକ

ପଜ୍....... ସାଇଲେନ୍‌ସ........ ସ୍ଲାଇଟ୍ ପଜ୍....... ଲଙ୍ଗ ସାଇଲେନ୍‌ସ..... ହାରୋଲ୍‌ଡ ପିଣ୍ଟରଙ୍କ ନାଟକର ସବୁଠୁ ବଡ ବିଭାବ ତାଙ୍କ ସଂଳାପର ମଧ୍ୟବର୍ତ୍ତୀ ନୀରବତା। ପାଠ ଅପେକ୍ଷା ନୀରବତା ହିଁ ବେଶୀ ଅର୍ଥାୟିତ କରିପାରେ ତାଙ୍କ ନାଟକକୁ। ନାଟକୀୟତା ଓ ସଂଳାପରେ ତାଙ୍କର ଅର୍ଥମୟ ନୀରବତା ଓ ତା'ର ପ୍ରଭାବ ବିଷୟରେ ୧୯୭୬ରେ ଏକ ସାକ୍ଷାତକାରରେ ସେ କହିଥିଲେ, "I Think Possibly it's because people fall back on anything they can lay their hands on verbally to keep away from the danger of knowing and being known." ପିଣ୍ଟର ମୂଳତଃ ନାଟ୍ୟକାର। ଚଳଚ୍ଚିତ୍ର ସହ ତାଙ୍କ ସଂପର୍କ ଯଥେଷ୍ଟ ନିବିଡ। ତେବେ ଜଣେ କ୍ରୋଧୀ ଏବଂ ସିଧା ସିଧା ପ୍ରତିବାଦ କରୁଥିବା କବି ଭାବରେ ମଧ୍ୟ

ତାଙ୍କର ସୁନାମ ରହିଛି। ପିଣ୍ଟର ସାହିତ୍ୟର ପ୍ରାୟ ସମସ୍ତ ଆଲୋଚକ ଗୋଟିଏ କଥା କହନ୍ତି, ସଂଳାପ ଅପେକ୍ଷା ତାଙ୍କ ନାଟକରେ ପଜ୍‌ର ମହତ୍ତ୍ୱ ସର୍ବାଧିକ। ସେ ସ୍ପଷ୍ଟ ଓ ସରଳ ଅନୁଭବର କଥା କହନ୍ତି ନାହିଁ। ନ୍ୟୁୟର୍କ ଟାଇମ୍‌ସର ସାରା ଲୟାଲ୍‌ଙ୍କ ମତରେ So Precise and pared down is his prose, so artful his use of pauses and omissions to invoke discomfort, foreboding and miscommunication that he has his own adjective, Pinteresque, signifying a peculiar kind of atmosphieric unease. କୁହାଯାଏ ପିଣ୍ଟର ହେଉଛନ୍ତି ଇଂରାଜୀ ସାହିତ୍ୟର ଶ୍ରେଷ୍ଠତମ ଜୀବିତ ନାଟ୍ୟକାର। ତାଙ୍କ ଲେଖା ଇଂରାଜୀ ସାହିତ୍ୟକୁ ପ୍ରଦୂଷଣମୁକ୍ତ କରିଛି ବୋଲି ବିଶିଷ୍ଟ ଆଲୋଚକମାନେ ମତ ଦେଇଛନ୍ତି। ବିଶିଷ୍ଟ ଆଲୋଚକ ଡେଭିଡ୍ ହାରେଙ୍କ ମତରେ Pinter did what Auden said a poet should do, He cleaned the gutters of the English Language, so that it ever afterwards flowed more easily and more cleanly. We can also say that over his work and over his person hovers a sort of leonine, predatory spirit which is all the more powerful for being held under in a rigid discipline of form, or in a black suit.... The essence of his singular appeal is that you sit down to every play he writes in certain expectation of the unexpected. In sum, this tribute from one writer to another: you never know what the hell's coming next.

## ରାଜନୀତିର ଉଷ୍ଣତା ଓ କ୍ରିକେଟ୍‌ର ଉଦ୍ଦାମତା

ପିଣ୍ଟରଙ୍କ ନାଟକରେ ନୀରବତା ଯଥେଷ୍ଟ ଅର୍ଥମୟ। କିନ୍ତୁ ରାଜନୀତିର ମଇଦାନରେ ସେ ଭୀଷଣ କ୍ରୋଧୀ ଓ ଆମେରିକାନ ଛଦ୍ମ ଗଣତନ୍ତ୍ରର ତୀବ୍ର ବିରୋଧୀ। ବସ୍ତୁତଃ ଆମେରିକାନ୍‌ମାନେ ତାଙ୍କୁ ଘୃଣା କରିବା କଥା କିନ୍ତୁ ଆମେରିକାରେ ମଧ୍ୟ ସେ ଅତ୍ୟନ୍ତ ଲୋକପ୍ରିୟ ନାଟ୍ୟକାର। ତାଙ୍କ କବିତାରେ ଆମେରିକା ପ୍ରତି ଯେଉଁ ଘୃଣା ତାହା ସ୍ପଷ୍ଟ ଭାବେ ପ୍ରତିଫଳିତ। ବ୍ରିଟିଶ୍ ଶାସନର ଗୋଡାଣିଆ ନୀତିକୁ ସମାଲୋଚନା କରି ସେ ଟୋନି ବ୍ଲେୟାରଙ୍କୁ ପ୍ରବଳ ଗାଳି କରିଛନ୍ତି ବିଭିନ୍ନ ସମୟରେ। ଉପନିବେଶବାଦକୁ ପ୍ରୋତ୍ସାହିତ ଏବଂ ପରିଘୋଷିତ କରି ଆସିଥିବା ବ୍ରିଟେନ୍‌ର ଏହି ଉପନିବେଶ ବିରୋଧୀ ନାଟ୍ୟକାର ନିଜକୁ ଅପରାଧୀ ମନେ କରି କହିଛନ୍ତି, We have brought torture, cluster bombs, depleted uranium, innumerable acts of random murder, misery and degradation to the Iraqi people and call it

bringing freedom and democracy to Middle East. ଗଣତନ୍ତ୍ର ପ୍ରତି ପ୍ରଚୁର ଆସ୍ଥାବାନ ଏହି ମହାନ୍ ନାଟ୍ୟକାରଙ୍କ କ୍ରୋଧକୁ ଭାରତୀୟ ଋଷି ବିଶ୍ୱାମିତ୍ରଙ୍କ କ୍ରୋଧ ସହ ତୁଳନା କରାଯାଇପାରେ। ସତ୍ୟ ପ୍ରତି ନିଷ୍ଠା ଓ ସତ୍ୟର ପ୍ରତିଷ୍ଠା ପାଇଁ କ୍ରୋଧର ଶାଶ୍ୱତ ଆବଶ୍ୟକତାକୁ ପୁଣି ଥରେ ମନେ ପକାଇ ଦେଇଛନ୍ତି ହାରୋଲ୍ଡ ପିଣ୍ଟର।

ନାଟ୍ୟକାର, ଅଭିନେତା, ନିର୍ଦ୍ଦେଶକ, ରାଜନୈତିକ କର୍ମୀର ପରିଚୟ ବାହାରେ ପିଣ୍ଟରଙ୍କ ଆଉ ଗୋଟିଏ ବଡ ପରିଚୟ ହେଉଛି ସେ ଜଣେ ବିଶିଷ୍ଟ କ୍ରିକେଟ୍ ପ୍ରେମୀ। ଚଳିତ ବର୍ଷ ନୋବେଲ୍ ପୁରସ୍କାର ଜଣେ ଅଲରାଉଣ୍ଡରଙ୍କୁ ପ୍ରଦାନ କରାଯାଇଛି ବୋଲି ଗଣମାଧ୍ୟମର ମନ୍ତବ୍ୟ ପଛରେ ପିଣ୍ଟରଙ୍କ କ୍ରିକେଟ୍‌ପ୍ରେମ ଏକ ବଡ କାରଣ। ଭିନ୍ନ ଭିନ୍ନ ସମୟରେ ଲେଖକ ଓ ପ୍ରକାଶକ ମାନଙ୍କ ମଧ୍ୟରେ କ୍ରିକେଟ୍ ପ୍ରତିଯୋଗିତାର ଆୟୋଜନ ପିଣ୍ଟରଙ୍କ ଏକ ବିଶେଷ ସଉକ ଥିଲା। ତାଙ୍କ ନିଜସ୍ୱ ୱେବ୍‌ସାଇଟ୍‌ରେ କ୍ରିକେଟ୍ ଏକ ପ୍ରମୁଖ ସ୍ଥାନ ଗ୍ରହଣ କରିଛି।

ନିଜ ଶରୀରରେ କ୍ୟାନ୍‌ସର ଜୀବାଣୁ ସହ ସଂଘର୍ଷ କରୁଥିବା ପିଣ୍ଟର ସାମାଜିକସ୍ତରରେ ଆମେରିକା ପ୍ରାୟୋଜିତ ସନ୍ତ୍ରାସବାଦ ଓ ଗଣତନ୍ତ୍ର ବିରୋଧୀ ଅଭିଯାନର ବିରୋଧରେ ମାତିଛନ୍ତି। ୭୫ ବର୍ଷ ବୟସରେ ମଧ୍ୟ ଏବେ ବି ଉଦ୍ଦାମ, ଏବେ ବି ତରୁଣ ଏହି କୃତୀ ନାଟ୍ୟକାରଙ୍କୁ ଆମର ସଲାମ।

## ହାରୋଲ୍ଡ ପିଣ୍ଟରଙ୍କ କେତୋଟି କବିତା

### ଏକ ବିଶେଷ ସଂପର୍କ

ବୋମା ଫୁଟେ ନାଇଁ
ଗୋଡ ଚାଲେ ନାଇଁ
ମୁଣ୍ଡ କାମ କରେ ନାଇଁ

ବାହୁ ଉଠେ ନାଇଁ
ପାଦ ଆଗାଏ ନାଇଁ
ଆଲୁଅ ଲିଭିଯାଏ।

ମୁଣ୍ଡ କାମ କରେ ନାହିଁ
ଗୋଡ ଚାଲେ ନାହିଁ
କିନ୍ତୁ ବାସନା ଜାଗ୍ରତ ହୁଏ।

ମୃତ ଲୋକମାନେ ଆବର୍ଜନା
ଆଲୁଅ ଲିଭିଯାଏ
ମୃତ ଲୋକମାନେ ଧୂଳି।

ଜଣେ ଲୋକ ଆଉ ଜଣେ ଲୋକ
ଆଗରେ ଅଣ୍ଟା ଭାଙ୍ଗି
ତା'ର ଲିଙ୍ଗ ଚୋଷୁଥାଏ।

## ପାଣିପାଗ ସୂଚନା

ଆଜିର ଦିନ ଆରମ୍ଭ ହେଲା ମେଘରୁ
ଖୁବ୍ ଥଣ୍ଡା ଓ କୋହଲା
ଆସ୍ତେ ଆସ୍ତେ ସୂର୍ଯ୍ୟ ଦେଖାଯିବ
ଶୁଖିଲା ଓ ଉଷୁମ୍।

ସଂଧ୍ୟାରେ ଚନ୍ଦ୍ର ଚମକିବ
ସଫା ଓ ସ୍ୱଚ୍ଛ ଆକାଶରେ
ହୁଏତ, ଦ୍ରୁତ ପବନ
ବୋହିପାରେ ସଂଧ୍ୟାପରେ
ମଧ୍ୟରାତ୍ର ସୁଦ୍ଧା ସବୁକିଛି
ଶାନ୍ତ ହୋଇଯାଇପାରେ।
ଆଉ କିଛି ଘଟିବ ନାହିଁ ତା'ପରେ।
ଏତକ ହିଁ ଶେଷ ସୂଚନା
ପାଣିପାଗ ସଂପର୍କରେ।

## ଆମେରିକା ପାଇଁ ପ୍ରାର୍ଥନା

ପୁନଶ୍ଚ ଏଇଠୁ ସେମାନେ ଯାଆନ୍ତି ।

ସାଞ୍ଜୁଆ ପରେଡ୍‌ରେ ଆମେରିକାର ସେନାନୀ
ଆନନ୍ଦର ଗାଥା ଗାଇ ଗାଇ
ପୃଥିବୀ ସାରା ଦ୍ରୁତ ଧାବନ କରନ୍ତି
ଓ ଆମେରିକା ଦେବତାର ସ୍ତୁତି ଗାଉଥାନ୍ତି ।

ନାଳ-ନର୍ଦ୍ଦମା ବୁଜି ହୋଇପଡିଥାଏ
ସେମାନଙ୍କ ଶବରେ
ଯେଉଁମାନେ ତାଙ୍କ ସହ ଯୋଗ ଦିଅନ୍ତି ନାହିଁ
ଯେଉଁମାନେ ମନା କରନ୍ତି ଗୀତ ଗାଇବାକୁ
ଯେଉଁମାନେ ହରେଇ ଦେଇଛନ୍ତି ତାଙ୍କରି ସ୍ୱର
ଯେଉଁମାନେ ଭୁଲି ଯାଇଛନ୍ତି ରାଗିଣୀ ।

ସେମାନଙ୍କ ଆଦେଶନାମାରେ କଟିଯାଏ
ତୁମର ମୁଣ୍ଡ ଓ ଗଡୁଥାଏ ବାଲିରେ
ତୁମର ମୁଣ୍ଡ ଆବର୍ଜନା ଭିତରେ ଏକ ପୋଲ
ତୁମର ମୁଣ୍ଡ ଧୂଳି ଭିତରେ ମେଞ୍ଚାଏ ମଇଳାଦାଗ
ତୁମର ଆଖି ନାହିଁ ଓ ତୁମର ନାକ
କେବଳ ଆଘ୍ରାଣ କରୁଛି ମଳାଲୋକର ଦୁର୍ଗନ୍ଧ
ଏବଂ ସବୁ ମୃତପବନ ପୁଣିଥରେ ଜିଇଁ ଉଠୁଛି
ଆମେରିକାନ୍ ଦେବତାର ଗନ୍ଧରେ ।



# ପୃଥିବୀର ନିରୋଳା ହୃଦୟର ଅନ୍ୟ ଏକ ନାଁ
# ଖଲିଲ୍ ଜିବ୍ରାନ୍

କଳା କ୍ଷେତ୍ରରେ ପାଗଳାମି ହେଉଛି ସର୍ଜନା। କବିତାରେ ପାଗଳାମି ହେଉଛି ପ୍ରଜ୍ଞା। ଈଶ୍ୱରଙ୍କୁ ପାଇବା ପାଇଁ ପାଗଳାମି ହେଉଛି ପୃଥିବୀର ଶ୍ରେଷ୍ଠତମ ପୂଜା।

ଖଲିଲ୍ ଜିବ୍ରାନ୍ ଥିଲେ ଆମ ପୃଥିବୀର ପ୍ରଶାନ୍ତତମ ପାଗଳ। ତମାମ ଜୀବନ ସର୍ଜନା ଓ ଶାନ୍ତି ପାଇଁ ସମର୍ପି ଦେଇଥିବା ଲେବାନନ୍‌ର ଏଇ କବି, ଦାର୍ଶନିକ, ଚିତ୍ରଶିଳ୍ପୀ, ଶାନ୍ତି କର୍ମୀ, ଦ୍ରଷ୍ଟା, ବିପ୍ଲବୀ, ଗୁରୁ ଏବଂ ମାନବିକତାର ବନ୍ଧୁଙ୍କ ଜୀବନ ଏକ ପରିପୂର୍ଣ୍ଣ କବିତା। ବହୁ ଲେଖକ ଜନ୍ମ ହେଇଛନ୍ତି ଏଇ ପୃଥିବୀରେ। ଲେଖା ବି ହେଇଛି ଅନେକ। କିନ୍ତୁ ଲେଖା ପରି ଲେଖକଟିଏ, କବିତା ପରି କବିଟିଏ କିମ୍ବା ଚିତ୍ର ପରି ଚିତ୍ରକରଟିଏ ଖୋଜି ପାଇବା ବିରଳ। ଖଲିଲ୍ ଜିବ୍ରାନ୍ ଥିଲେ ନିଜ ସୃଷ୍ଟି ସହ ପୁରାପୁରି ଏକାତ୍ମ। ଯଦିଓ ତାଙ୍କର ଲେବାନନ୍‌ରେ ଜନ୍ମ, ଜୀବନ ବିତିଥିଲା ଆମେରିକାରେ। ଆମେରିକା ତାଙ୍କୁ ଦେଇଥିଲା ଆଶ୍ରୟ। ତମାମ୍ ଜୀବନ ସିଏ ଝୁରୁଥିଲେ ତାଙ୍କର ପ୍ରିୟ ଜନ୍ମମାଟିକୁ। ଲେବାନନ୍‌ର ସଂକଟମୟ ଇତିହାସରେ ନିଜ ପାଇଁ ଜାଗାଟିଏ ଅହରହ ଖୋଜିଥିଲେ ସେ। କିନ୍ତୁ ଜୀବନ କାଳରେ ଲେବାନନ୍‌କୁ ଫେରିବା ତାଙ୍କ ପାଇଁ ସମ୍ଭବପର ନଥିଲା। ଲେବାନନ୍‌କୁ ଫେରିଥିଲା ତାଙ୍କ ଶବ।

ଜିବ୍ରାନ୍‌ଙ୍କ ସର୍ଜନାର ପରିମାଣ ଯଥେଷ୍ଟ ଅଧିକ। ତେବେ ତାଙ୍କର ଏକମାତ୍ର ପୁସ୍ତକ 'ଦି ପ୍ରଫେଟ୍' ସମଗ୍ର ପୃଥିବୀର ଶ୍ରେଷ୍ଠତମ ପୁସ୍ତକ ଭାବରେ ପରିଚିତ। ଆମେରିକାର ପୂର୍ବତନ ରାଷ୍ଟ୍ରପତି ଜିମି କାର୍ଟର ଥରେ କହିଥିଲେ- ତାଙ୍କ ପଢା ଟେବୁଲ୍‌ରେ କେବଳ ଦୁଇଟି ବହି ଥାଏ। ପ୍ରଥମଟି ବାଇବେଲ୍ ଓ ଅନ୍ୟଟି ଜିବ୍ରାନ୍‌ଙ୍କ 'ଦି ପ୍ରଫେଟ୍'। କେବଳ ଆମେରିକାରେ ଆଠ କୋଟିରୁ ଅଧିକ ସଂଖ୍ୟକ ବହି ଛପା ହୋଇଛି 'ଦି ପ୍ରଫେଟ୍'ରେ। ପୃଥିବୀର ପ୍ରାୟ ସମସ୍ତ ଭାଷାରେ ଅନୁଦିତ ହୋଇଛି ଏହି ପୁସ୍ତକ। ଫ୍ରେଡେରିକ୍ ନିତ୍‌ସେଙ୍କର ଶୈଳୀଦ୍ୱାରା ଗଭୀର ଅନୁପ୍ରାଣୀତ ଜିବ୍ରାନ୍‌ଙ୍କ ଏହି ଅମର ସୃଷ୍ଟି ପ୍ରକାଶନ

ଇତିହାସରେ ଏକ ବିସ୍ମୟ। ପ୍ରଫେଟ୍ ଅଲ୍‌ମୁସ୍ତାଫା ଯାହା ସବୁ କହିଛନ୍ତି, ସେସବୁ ଆମ ପୃଥିବୀର ଶ୍ରେଷ୍ଠତମ ସତ୍ୟବାକ୍ୟ। କବିତା ଏବଂ ଦର୍ଶନର ଅପୂର୍ବ ବିନ୍ୟାସ 'ଦି ପ୍ରଫେଟ୍'କୁ ଅନୁପମ ସିଦ୍ଧିର ଅଧିକାରୀ କରିଛି।

ଖଲିଲ୍ ଜିବ୍ରାନ୍‌ଙ୍କ ଜୀବନ ଥିଲା ଯନ୍ତ୍ରଣା ଭିତରେ ଆନନ୍ଦର ଶ୍ରେଷ୍ଠତମ ନିଦର୍ଶନ। ୬,ଡିସେମ୍ବର ୧୮୮୩ରେ ତାଙ୍କର ଜନ୍ମ ଲେବାନନ୍‌ର ବିସାରି ପ୍ରଦେଶରେ। ତାଙ୍କର ବାପା ଥିଲେ ଜଣେ ପ୍ରଚଣ୍ଡ ମଦ୍ୟପ ଓ ସ୍ୱପ୍ନଖୋର ମଣିଷ। ତାଙ୍କ ପୂର୍ବଜଙ୍କ ସ୍ମୃତି ରକ୍ଷା ପାଇଁ ପୁଅର ନାଁ ଦେଇଥିଲେ ଖଲିଲ୍ ଜିବ୍ରାନ୍। ଲେବାନନ୍ ହେଉଛି ଦେବତା ଓ ଦେବଦୂତମାନଙ୍କର ଭୂମି। ଯୀଶୁଙ୍କ ଜନ୍ମ ଓ ଜୀବନ ସହ ସଂପର୍କୀତ ଏଇ ମାଟିରେ ୩୨ ହଜାରରୁ ଉର୍ଦ୍ଧ୍ୱ ଦେବଦୂତ ଭୂମିଷ୍ଠ ହୋଇଛନ୍ତି। ବୋଧେ ଜିବ୍ରାନ୍ ଥିଲେ ସେହି ପରଂପରାର ଅନ୍ତିମ ଦେବଦୂତ। ମଦ୍ୟପ ପିତା ଜେଲ୍ ଗଲା ପରେ ତାଙ୍କର ମା' କାମିଲେ ଜିବ୍ରାନ୍‌ଙ୍କୁ ସାଙ୍ଗରେ ନେଇ ଚାଲି ଆସିଲେ ଆମେରିକା। ଜିବ୍ରାନ୍‌ଙ୍କୁ ପାଠ ପଢାଇବା ପାଇଁ ତାଙ୍କ ମା', ସାବତ ଭାଇ ବୁଟ୍ରୋସ୍ ଏବଂ ଭଉଣୀ ସୁଲ୍‌ତାନା ଏବଂ ମାରିଆନା ପ୍ରଚୁର ପରିଶ୍ରମ କରିଛନ୍ତି। ମା' ଥିଲେ ତାଙ୍କ ଜୀବନର ସବୁଠୁ ବଡ ପ୍ରେରଣା। ତାଙ୍କର ପ୍ରସିଦ୍ଧ ଆତ୍ମଜୀବନ ମୂଳକ ଉପନ୍ୟାସ 'ଦି ବ୍ରୋକନ୍ ୱିଙ୍ଗ୍'ରେ ମା'ଙ୍କ ବିଷୟରେ ସେ ଲେଖିଛନ୍ତି- 'ପ୍ରକୃତିର ପ୍ରତ୍ୟେକ ଅଂଶ ମା'ର କଥା ହିଁ କହିଥାଏ। ସୂର୍ଯ୍ୟ ହେଉଛି ପୃଥିବୀର ମା', ଯିଏ ତାର ଉତ୍ତାପର ମମତାରେ ପୃଥିବୀକୁ ପାଳିଥାଏ। ସେ ପୃଥିବୀକୁ କେବେ ବି ଛାଡିଯାଏ ନାହିଁ, ଯେତେବେଳେ ସମୁଦ୍ରର ଗୀତ ଓ ପକ୍ଷୀର କାକଳି ଶୁଣି ଶୁଣି ପୃଥିବୀ ଶୋଇ ପଡିଥାଏ। ଏଇ ପୃଥିବୀ ହେଉଛି ଗଛ ଓ ଫୁଲମାନଙ୍କ ମା'। ସିଏ ସେମାନଙ୍କୁ ଜନ୍ମ ଦିଏ, ଲାଳନ ପାଳନ କରେ। ଗଛ ଓ ଫୁଲମାନେ ହେଉଛନ୍ତି ଫଳ ଓ ବୀଜମାନଙ୍କର ମା' ଏବଂ ମା' ହେଉଛି ସମଗ୍ର ଅସ୍ତିତ୍ୱର ପ୍ରତିରୂପ-ପ୍ରେମ ଓ ସୌନ୍ଦର୍ଯ୍ୟର ଆତ୍ମିକ ସ୍ୱରୂପ।'

ପିଲାଦିନୁ ଜିବ୍ରାନ୍‌ଙ୍କ ପ୍ରବଳ ଆଗ୍ରହ ଥିଲା ଚିତ୍ର ଆଙ୍କିବା ପାଇଁ। ତାଙ୍କ ପିଲାଦିନର ଏକ ଘଟଣା ବିଷୟରେ ତାଙ୍କର ଜୀବନୀକାର ବାରବରା ୟଙ୍ଗ ଲେଖିଛନ୍ତି- ଜିବ୍ରାନ୍‌ଙ୍କୁ ଯେତେବେଳେ ୬ବର୍ଷ ତାଙ୍କ ମା'ତାଙ୍କୁ ଲିଓନାର୍ଡୋ ଦା ଭିନ୍ସିଙ୍କର ଏକ ଚିତ୍ର ବହି ପଢ଼ିବାକୁ ଦେଇଥିଲେ। ଚିତ୍ରଗୁଡିକୁ ଦେଖି ସେ ପୁରାପୁରି ମଜି ଯାଇଥିଲେ। ଲିଓନାର୍ଡୋଙ୍କ ଚିତ୍ର ଭିତରେ ନିଜକୁ ଆବିଷ୍କାର କରି ମା'ଙ୍କୁ ଥରେ ସେ କହିଥିଲେ- 'ତମର ମୋ ସାଙ୍ଗରେ ସଂପର୍କ କ'ଣ? ମୁଁ ତ ଜଣେ ଇଟାଲିଆନ୍।' କଳାର ବ୍ୟାପକ ପରିଧିରେ ସମଗ୍ର ପୃଥିବୀର ସତ୍ତାକୁ ସେ ନିଜ ଭିତରେ ଅନୁଭବ କରିପାରିଥିଲେ। ଦିନେ ଜଣେ ଚିତ୍ରକର ତାଙ୍କ ସ୍କୁଲକୁ ଆସିଥିଲେ। ଜିବ୍ରାନ୍‌ଙ୍କର ଡ୍ରଇଂ ଦେଖି ସେ ପ୍ରଭାବିତ ହୋଇଥିଲେ।

ତା'ପରଦିନ ଚିତ୍ରକର ଜଣକ ଜିବ୍ରାନ୍‌ଙ୍କୁ ନିଜ ଷ୍ଟୁଡିଓକୁ ଆମନ୍ତ୍ରଣ କରିଥିଲେ। ସେଠାରେ ଉପସ୍ଥିତ ଜଣେ ଭଦ୍ର ମହିଳା, ଯାହାଙ୍କର ଚିତ୍ର ଅଙ୍କନ କରୁଥିଲେ ପୂର୍ବୋକ୍ତ ଚିତ୍ରକର। ଜିବ୍ରାନ୍‌ଙ୍କୁ ପଚାରିଲେ- ତାଙ୍କ ଚିତ୍ରଟି କେମିତି ହୋଇଛି? ଜିବ୍ରାନ୍‌ଙ୍କ ଉତ୍ତର ଥିଲା- କୌଣସି ଚିତ୍ର କେବେ ପୂର୍ଣ୍ଣାଙ୍ଗ ନୁହେଁ। ଏପରିକି ଚିତ୍ରକର କହିଲା ପରେ ମଧ୍ୟ ନୁହେଁ। ଆମେ କେବଳ ଆଭାସ ମାନଙ୍କର ଚିତ୍ର ଅଙ୍କନ କରିଥାଉ। ପୂର୍ଣ୍ଣାଙ୍ଗ ଚିତ୍ରଟି କେବଳ ଈଶ୍ୱର ହିଁ ଅଙ୍କନ କରିପାରିବେ। ମାତ୍ର ୧୪ ବର୍ଷ ବୟସ୍କ ବାଳକ ମୁହଁରୁ ଏମିତି ଉତ୍ତର ଶୁଣି ଭଦ୍ର ମହିଳା ଚମକି ପଡିଥିଲେ। ସେଦିନ ଭଦ୍ରମହିଳା ଜଣକ କିଶୋର ଜିବ୍ରାନ୍‌ଙ୍କୁ ଡାକି ନେଇଥିଲେ ତାଙ୍କ ଘରକୁ। ତାଙ୍କ ଘରେ ଚନ୍ଦନ କାଠ ଜଳାଇ ସେ ସୃଷ୍ଟି କରିଥିଲେ ଏକ ବାସ୍ନାମୟ ପରିବେଶ। ଭଦ୍ର ମହିଳା ନିଜ ହୃଦୟ ସମର୍ପି ଦେଇଥିଲେ ତାଙ୍କର କିଶୋର ପ୍ରେମିକକୁ। ସେଦିନର ସେଇ ପ୍ରେମ ସଂପର୍କର ଅନୁଭବ ବିଷୟରେ ଜିବ୍ରାନ୍ କହନ୍ତି- 'ସତେ କି ମୁଁ ଏକ ତତଲା ଚୁଲିରୁ ବାହାରି ଆସୁଛି ଏବଂ ମୋର ପ୍ରତ୍ୟେକ ରକ୍ତବିନ୍ଦୁ ଜଳନ୍ତା କୋଇଲା ପରି ଡହଳୁଛି।'

ଆମେରିକାରେ ଶିକ୍ଷା ସମାପ୍ତି ପରେ ଜିବ୍ରାନ୍ ଫେରିବାକୁ ଚାହିଁଥିଲେ ଲେବାନନ୍‌କୁ। ସେ ଚାହୁଁଥିଲେ ନିଜ ମାତୃଭୂମିର ଭାଷା ଓ ପ୍ରଜ୍ଞାକୁ ବୁଝିବା ପାଇଁ। ତାଙ୍କର ପ୍ରଥମ ପ୍ରେମିକା ଥିଲେ ହାଲା ଦାହେର, ଯାହାଙ୍କୁ ଜିବ୍ରାନ୍ ବିବାହ କରିବାକୁ ଚାହୁଁଥିଲେ। କିନ୍ତୁ ହାଲାଙ୍କ ପରିବାର ଥିଲେ ଯଥେଷ୍ଟ ସମ୍ଭ୍ରାନ୍ତ ଏବଂ ତାଙ୍କର ବିବାହ ଅନ୍ୟ କାହା ସହ ସ୍ଥିରୀକୃତ ହୋଇସାରିଥିଲା। ଲେବାନନ୍‌ର ସାମାଜିକ ବ୍ୟବସ୍ଥା ତରୁଣ ଜିବ୍ରାନ୍‌ଙ୍କ ପ୍ରେମକୁ ଭାଙ୍ଗି ଦେଇଥିଲା। ସେଇ ଭଙ୍ଗା ପ୍ରେମର ସ୍ମାରକୀ ହେଉଛି ତାଙ୍କର ଅନ୍ୟତମ ପ୍ରଖ୍ୟାତ ଉପନ୍ୟାସ 'ଦି ବ୍ରୋକେନ୍ ୱିଙ୍ଗ'। ଅଠର ବର୍ଷ ବୟସରେ ଆରବିକ୍‌ରେ ସେ ଡିଗ୍ରୀ ହାସଲ କରିସାରିଥିଲେ। ତାପରେ ଚିତ୍ରକଳା ଶିକ୍ଷାପାଇଁ ସେ ଯାଇଥିଲେ ପ୍ୟାରିସ୍। ଏହି ସମୟରେ ରଚିତ ହୋଇଥିଲା ତାଙ୍କର ପ୍ରଖ୍ୟାତ ଲେଖା 'ସ୍ପିରିଟ୍ ରେବିଲିୟସ୍'। ଯେଉଁଥିରେ ଲେବାନନ୍‌ର ସମ୍ଭ୍ରାନ୍ତମାନଙ୍କ ବିରୁଦ୍ଧରେ ସେ ଖୋଲାଖୋଲି ଯୁଦ୍ଧ ଘୋଷଣା କରିଥିଲେ। ଏହି ପୁସ୍ତକ ପ୍ରକାଶିତ ହେଲା ପରେ ଲେବାନନ୍‌ର ତୁର୍କୀ ସରକାର ତାଙ୍କୁ ନିର୍ବାସନ ଦଣ୍ଡରେ ଦଣ୍ଡିତ କରିଥିଲେ ଏବଂ ତାଙ୍କ ବହିକୁ ବିଚ୍ ବଜାରରେ ପୋଡା ଯାଇଥିଲା।

ତାପରେ ଆରମ୍ଭ ହୋଇଥିଲା ଜିବ୍ରାନ୍‌ଙ୍କ ଜୀବନ ଯନ୍ତ୍ରଣାର ଅଧ୍ୟାୟ। ଏପ୍ରିଲ୍ ୧୯୦୨ରେ ତାଙ୍କର ଭଉଣୀ ସୁଲତାନା ମୃତ୍ୟୁବରଣ କଲେ। ୧୯୦୩ରେ ଭାଇ ବୁଟ୍ରୋସ୍ ଏବଂ ମା' କାମିଲେ ମଧ୍ୟ ମୃତ୍ୟୁବରଣ କରିଥିଲେ। ନିଜ ପ୍ରିୟ ମଣିଷମାନଙ୍କୁ ହରାଇଲା ପରେ ତାଙ୍କ ଏକଲାପଣରୁ ସୃଷ୍ଟି ହୋଇଥିଲା ରାଶି ରାଶି ଚମତ୍କାର ଲେଖା।

ଜୀବନର ଏହି ଯନ୍ତ୍ରଣାଦାୟକ ସମୟରେ ସେ ଭେଟିଥିଲେ ମେରି ହାସ୍‌କେଲ୍‌ଙ୍କୁ । ମେରି ଥିଲେ ତାଙ୍କ ଅନ୍ଧାରି ଜୀବନରେ ଆଲୋକର ଉତ୍ସ । ମେରିଙ୍କ ସହାୟତାରେ ସେ ପ୍ୟାରିସ୍‌ରେ ଚିତ୍ରକଳା ଶିକ୍ଷା ହାସଲ କରିପାରିଥିଲେ । ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଜିବ୍ରାନ୍ ମେରିଙ୍କ ପାଖକୁ ୩୨୫ଟି ଚିଠି ଲେଖିଛନ୍ତି ଏବଂ ପ୍ରତ୍ୟୁତ୍ତରରେ ମେରି ଲେଖିଛନ୍ତି ୨୯୦ଟି ଚିଠି । ଏସବୁ ଚିଠି ବିଶ୍ୱ ସାହିତ୍ୟର ଅମୂଲ୍ୟ ସଂପଦ । ଭିର୍ଜିନିଆ ହିଲ୍‌ଙ୍କ ଦ୍ୱାରା ସଂପାଦିତ 'ବିଲ୍‌ଭେଡ୍ ପ୍ରଫେଟ୍' ଶୀର୍ଷକରେ ଏସବୁ ଚିଠି ପ୍ରକାଶିତ । ମେରିଙ୍କ ବ୍ୟତୀତ ଏମିଲ୍ ମିଚେଲ୍‌ଙ୍କ ସହ ତାଙ୍କ ସଂପର୍କର କଥା ମଧ୍ୟ ଉଠିଥାଏ । ମେରି ଏବଂ ଏମିଲ୍ ଜିବ୍ରାନ୍‌ଙ୍କ ଜୀବନକୁ ଗଭୀର ଭାବରେ ପ୍ରଭାବିତ କରିଛନ୍ତି । ଏମିଲ୍ ଚାହିଁଛନ୍ତି ଜିବ୍ରାନଙ୍କୁ ବିବାହ କରିବା ପାଇଁ । କିନ୍ତୁ ତାହା ସମ୍ଭବ ହୋଇନଥିଲା ।

କଳାର ନଗରୀ ପ୍ୟାରିସ୍‌ରେ ଜିବ୍ରାନ୍ ଶିଖିଥିଲେ ଚିତ୍ରକଳା ଓ ଜୀବନକୁ ଭଲ ପାଇବାର କଳା । ପୃଥିବୀର କୋଣ ଅନୁକୋଣରୁ ଆଲୋକର ଭାଷା ପହଞ୍ଚୁଥିଲା ତାଙ୍କ ହୃଦୟକୁ । ୱିଲିୟମ୍ ବ୍ଲାକ୍‌ଙ୍କ କବିତା ଭୀଷଣ ଭାବରେ ଆକ୍ରାନ୍ତ କରିଥିଲା ଜିବ୍ରାନ୍‌ଙ୍କ ମନକୁ । ବିଶିଷ୍ଟ ଭାସ୍କର ଅଗଷ୍ଟ ରୋଡିନ୍ ତାଙ୍କୁ କହିଥିଲେ- ବିଂଶ ଶତାବ୍ଦୀର ୱିଲିୟମ୍ ବ୍ଲାକ୍ । ପ୍ୟାରିସ୍‌ରୁ ୧୯୧୨ ମସିହାରେ ଜିବ୍ରାନ୍ ଫେରି ଆସିଲେ ନ୍ୟୁୟର୍କକୁ । ନ୍ୟୁୟର୍କରେ ହିଁ ରଚିତ ହେଲା ତାଙ୍କର ପ୍ରମୁଖ ଇଂରାଜୀ ବହିମାନ ।

ଜିବ୍ରାନ୍ ଥିଲେ ଚିରକାଳ ଏକ ଧ୍ୟାନସ୍ଥ ମଣିଷ । ପ୍ରତି ମୁହୂର୍ତ୍ତରେ ସେ ଭିନ୍ନ ଏକ ପୃଥିବୀର ବାସିନ୍ଦା ମନେ ହେଉଥିଲେ । ଏହି ପୃଥିବୀ ପାଇଁ ଶାନ୍ତି ଓ ଭଲ ପାଇବା ଖୋଜିବା ପାଇଁ ଅହରହ ଏକ ଦିବ୍ୟ ସତ୍ତା ସହ ତାଙ୍କର ଯୋଗାଯୋଗ ଅବ୍ୟାହତ ରହିଥିଲା । ସେ ତେଣୁ ଥରେ କହିଥିଲେ- "ମୋତେ କ୍ଷମା କରନ୍ତୁ, ମୁଁ ଯଥେଷ୍ଟ ସମୟ ଏ ପୃଥିବୀରେ ରହିପାରୁନାହିଁ" । ଏକ ମଗ୍ନ ନୀରବତାରେ ବୁଡି ରହି ସେ ମଣିଷ ପାଇଁ ଦିବ୍ୟ ଭାବନାର ସନ୍ଦେଶ ଆହରଣ କରୁଥିଲେ । ତାଙ୍କର ପ୍ରେମିକା ମେରିଙ୍କୁ ସେ କହିଥିଲେ- ସାର ଜୀବନ, ଭିନ୍ନ ଭିନ୍ନ ସମୟରେ ମୁଁ ଯେମିତି ଉପରକୁ ଉଠି ଉଠି ଯାଉଛି । ମୁଁ ମୋର ଦୁଇଟି ସତ୍ତା ବିଷୟରେ ସଚେତନ । ମୁଁ ଓ ମୋ ଭିତରେ ଥିବା ମୁଁ । ମୁଁ କେବେବି ଏ ଦୁଇଟି ସତ୍ତାକୁ ଅଲଗା ଅଲଗା ଦେଖିନାହିଁ । ବିଛଣାକୁ ଶୋଇବାକୁ ଗଲାବେଳେ ମୁଁ ପ୍ରାୟତଃ ମୋ ଜୀବନର ଶ୍ରେଷ୍ଠ ଭାବନାମାନଙ୍କୁ ଭେଟିଛି । ମେରି ତାଙ୍କୁ ପଚାରିଥିଲେ- ତମେ ସେ ଅବସ୍ଥାରେ କଣ ସବୁ ଦେଖ ? ଜିବ୍ରାନଙ୍କ ଉତ୍ତର ଥିଲା- ମୁଁ ଦେଖେ, ବୃତ୍ତାକାରର ଆଲୁଅ ଏବଂ କେବଳ ସଂଗୀତ । ଭାରତୀୟ ଋଷିମାନଙ୍କ ପରି ଏକ ଜ୍ୟୋତିର୍ମୟ ଅନୁଭବ

ତାଙ୍କର ଥିଲା। ସେଥିପାଇଁ ଜୀବନ କାଳ ମଧ୍ୟରେ ତାଙ୍କ ଜନ୍ମସ୍ଥାନକୁ ନେଇ ଏକ ଅଦ୍‌ଭୁତ ବିବାଦ ସୃଷ୍ଟି କରିଥିଲେ। ଅଲ୍ ଫୁନୁନ୍ ପତ୍ରିକାରେ ପ୍ରକାଶିତ ତାଙ୍କର ଏକ ଜୀବନ କାହାଣୀରେ ଲେଖା ହୋଇଥିଲା Gibran was born in the year 1883 in Bisharri, Lebanon (And some say in Bombay, India). ଜନ୍ମସ୍ଥାନକୁ ନେଇ ଏଇ ବିବାଦର କୌଣସି ପ୍ରକାର ଖଣ୍ଡନ ଜିବ୍ରାନ୍ କରିନଥିଲେ। ତାଙ୍କ ସାହିତ୍ୟରେ ଭାରତୀୟ ଦର୍ଶନର ପର୍ଯ୍ୟାପ୍ତ ପ୍ରଭାବ ରହିଥିଲା। ଅନେକ ସମୟରେ ଲାଗିଛି, ସତେ କି ସେ ଭାରତୀୟ ଋଷି କବିଙ୍କର ଏକ ଆରବିକ୍ ସଂସ୍କରଣ।

୧୯୨୩ରେ 'ଦି ପ୍ରଫେଟ୍' ପ୍ରକାଶ ପାଇଲା ପରେ ତାଙ୍କର ଯଶ ଓ ଖ୍ୟାତି ବ୍ୟାପି ଯାଇଥିଲା। ତାଙ୍କର ଅନ୍ୟ ସବୁ ପୁସ୍ତକ 'ଜେସସ ଦି ସନ୍ ଅଫ ମେନ୍', 'ଦି ଗାର୍ଡେନ୍ ଅଫ୍ ଦି ପ୍ରଫେଟ୍', 'ଦି ଓ୍ୱାଣ୍ଡରର୍', 'ସେଣ୍ଡ ଏଣ୍ଡ ଫୋମ୍' ଇତ୍ୟାଦି ବହୁ ଚର୍ଚ୍ଚିତ।

ଆମେରିକାରେ କଟିଥିଲା ତାଙ୍କ ଜୀବନର ସର୍ବାଧିକ ସମୟ। କିନ୍ତୁ ସେ ଚାହିଁନଥିଲେ ଆମେରିକରେ ରହିବାକୁ। ବରଂ ଲେବାନନ୍‌ର ଡାକ ତାଙ୍କୁ ସବୁଦିନ ଆତୁର କରୁଥିଲା। ୧୦ ଏପ୍ରିଲ୍ ୧୯୩୧ରେ ସେ ମୃତ୍ୟୁବରଣ କଲେ। ତାଙ୍କର ଶବ ସମାଧି ଦିଆଗଲା ତାଙ୍କର ପ୍ରିୟ ଲେବାନନ୍ ମାଟିରେ। ଜୀବନ କାଳ ଭିତରେ ଯେଉଁ ମାଟିକୁ ସେ ଫେରିନଥିଲେ, ସେ ମାଟି ତାଙ୍କୁ କୋଳେଇ ନେଇଥିଲା ମୃତ୍ୟୁପରେ। ତାଙ୍କ ସମାଧିରେ ଲେଖାଥିଲା- Here lies among us Gibran. ଆରବୀୟ ସାହିତ୍ୟକୁ ଏକ ନୂତନ ଦିଶା ଓ ଦିଗନ୍ତ ଦେଇଥିବା ଜିବ୍ରାନ୍ ସବୁ ସମୟ ପାଇଁ ଏକ ବିରାଟ କୀର୍ତ୍ତିସ୍ତମ୍ଭ। ପାପୀ ଏବଂ ସାଧୁଙ୍କୁ ଜାଆଁଳା ଭାଇ ମଣୁଥିବା ଏହି ମହାନ୍ ଦାର୍ଶନିକ ଏବେ ବି ଜୀବନବୋଧର ଅନ୍ୟତମ ଶ୍ରେଷ୍ଠ ଚିତ୍ରକର। ମଣିଷ ପାଇଁ ନିଜ ହୃଦୟରେ ପ୍ରଚୁର ଦାୟିତ୍ୱ ମୁଣ୍ଡେଇଥିବା ଖଲିଲ୍ ଜିବ୍ରାନ୍‌ଙ୍କ ପରି ଲେଖକ ପୃଥିବୀ ଇତିହାସରେ ବିରଳ। ଗୋଟିଏ ବହିର ଆଠକୋଟିରୁ ଅଧିକ କପି ଆଜି ପର୍ଯ୍ୟନ୍ତ ବିକ୍ରି ହୋଇଛି। କିନ୍ତୁ ତାଙ୍କୁ ନୋବେଲ୍ ପୁରସ୍କାର ମିଳିନାହିଁ ସାହିତ୍ୟରେ। ତାହା ହିଁ ତାଙ୍କର ସ୍ୱୀକୃତି।

## 'ଦି ପ୍ରଫେଟ୍'ର କିୟଦଂଶ

ଆଲମିତ୍ରା ପଚାରିଲା, ଆମକୁ ବିବାହ ବିଷୟରେ କିଛି କୁହନ୍ତୁ ଏବଂ ସେ କହିଲେ- ତମେ ଏକା ସାଙ୍ଗରେ ଜନ୍ମ ହେଇଛ ଏବଂ ସାରା ଜୀବନ ଏକା ସାଙ୍ଗରେ ରହିବ।

ତମେ ସେତେବେଳେ ବି ଏକା ସାଙ୍ଗରେ ଥିବ, ଯେଉଁଦିନ ମୃତ୍ୟୁର ଧଳା ଡେଣା ତମର ଦିନ ମାନଙ୍କୁ ଉଜାଡି ଦେବ।

ତମେ ଈଶ୍ୱରଙ୍କ ନୀରବ ସ୍ମୃତିରେ ମଧ୍ୟ ଏକା ସାଙ୍ଗରେ ରହିଥିବ।
କିନ୍ତୁ ତମର ଏକତ୍ୱରେ ବି ଜାଗା ରହିଥାଉ।
ଏବଂସ୍ୱର୍ଗର ପବନ ତମ ଦୁହିଁଙ୍କ ଭିତରେ ନାଚିବା ପାଇଁ ଜାଗା ପାଉ।
ପରସ୍ପରକୁ ଭଲ ପାଅ, କିନ୍ତୁ ପ୍ରେମର ବନ୍ଧନ ତିଆରି କର ନାହିଁ।
ତମେ ପ୍ରେମକୁ ଦୁଇଟି ଆତ୍ମାର ବେଳାଭୂଇଁ ମଝିରେ ପ୍ରବହମାନ ସମୁଦ୍ର କରିଦିଅ।
ଜଣେ ଆଉ ଜଣକର ପାତ୍ର ପୂର୍ଣ୍ଣ କର, କିନ୍ତୁ ଗୋଟିଏ ପାତ୍ରରୁ ପିଅ ନାହିଁ।
ଜଣେ ଆଉ ଜଣକୁ ଖାଇବାକୁ ଦିଅ, କିନ୍ତୁ ସମାନ ଗୁଣ୍ଡା ଖାଅ ନାହିଁ।
ଏକା ସାଙ୍ଗରେ ନାଚ, ଗାଅ, ଆନନ୍ଦିତ ହୁଅ। କିନ୍ତୁ ପ୍ରତ୍ୟେକ ଏକଲା ରୁହ।
ବୀଣାର ତାର ପରି ଏକଲା ରୁହ, କିନ୍ତୁ ଏକା ସାଙ୍ଗରେ ସଂଗୀତ ସୃଷ୍ଟି କର।
ହୃଦୟ ଦିଅ, କିନ୍ତୁ ହୃଦୟକୁ ନିଜ ନିଜ ସଂପତ୍ତି ବୋଲି ଭାବ ନାହିଁ।
ଜୀବନର ହାତ ହିଁ ତମ ହୃଦୟକୁ ଧରି ରଖିପାରିବ।
ଏକା ସାଙ୍ଗରେ ଛିଡା ହୁଅ, କିନ୍ତୁ ପରସ୍ପରର ଖୁବ୍ ପାଖରେ ନୁହଁ।
ଯେମିତି ମନ୍ଦିରର ସ୍ତମ୍ଭ ଛିଡା ହୋଇଥାନ୍ତି ଅଲଗା ଅଲଗା।
ଯେମିତି ଓକ୍ ଓ ସାଇପ୍ରସ୍ ବଢି ପାରନ୍ତି ନାହିଁ ନିଜ ନିଜ ଛାଇରେ।

*

ଜଣେ ସ୍ତ୍ରୀ ଲୋକ ଯିଏ ତା'କୋଳରେ ଶିଶୁଟିଏ ଧରି ବସିଥିଲା ପଚାରିଲା- ଆମକୁ ପିଲାମାନଙ୍କର ବିଷୟରେ କୁହନ୍ତୁ ଏବଂ ସେ କହିଲେ-

ତମର ପିଲାମାନେ ତମର ପିଲା ନୁହଁନ୍ତି।
ସେମାନେ ଜୀବନର ପ୍ରବହମାନତା ପୁଅ ଓ ଝିଅ।
ସେମାନେ ସେ ବାଟ ଦେଇ ଆସନ୍ତି, ତମଠୁ ଆସନ୍ତି ନାହିଁ।
ଯଦିଓ ସେମାନେ ତମ ସାଙ୍ଗରେ ରହନ୍ତି, ସେମାନେ ତମର ନୁହଁନ୍ତି।
ତମେ ସେମାନଙ୍କୁ ଭଲ ପାଇବା ଦେଇପାରିବ, କିନ୍ତୁ ଚିନ୍ତାଶକ୍ତି ନୁହଁ।

ତମେ ସେମାନଙ୍କ ଦେହକୁ ଘର ଦେଇପାରିବ, କିନ୍ତୁ ଆତ୍ମାକୁ ନୁହେଁ।
ସେମାନଙ୍କର ଆତ୍ମା ଆଗାମୀର ବସାରେ ରହିଥାଏ।
ତମେ ସେ ବସା ଦେଖିପାରିବ ନାହିଁ, ସ୍ୱପ୍ନରେ ବି ନୁହଁ।
ତମେ ହୁଏତ ତାଙ୍କ ପରି ହେବା ପାଇଁ ଚେଷ୍ଟା କରିପାର, କିନ୍ତୁ ସେମାନେ ତମପରି ହୁଅନ୍ତୁ ଏହା ଚାହଁନାହିଁ।
କାରଣ ଜୀବନ ପଛ ଆଡକୁ ନାହିଁ। ତମେ ହେଉଛ ଧନୁ ଏବଂ ଏକ ଜୀଅନ୍ତା
ତୀର ପରି ତମର ପିଲାମାନେ ଆଗକୁ ଛୁଟି ଯାଆନ୍ତୁ।

## ଖଲିଲ୍ ଜିବ୍ରାନ୍‌ଙ୍କ କିଛି କଥା କିଛି କାହାଣୀ

### - ଦେବା ନେବା କଥା -

ଜଣେ ଲୋକ ଛୁଞ୍ଚର ଉପତ୍ୟକାରେ ବାସ କରୁଥିଲା। ଦିନେ ପ୍ରଭୁ ଯୀଶୁଙ୍କ ମା' ସେ ଲୋକଙ୍କ ପାଖକୁ ଆସିଲେ ଓ କହିଲେ- ଭାଇ, ମୋ ପୁଅର ପୋଷାକ ଚିରି ଯାଇଛି। ମୁଁ ତାକୁ ସିଲେଇ କଲେ ଯାଇ ସେ ମନ୍ଦିରକୁ ଯିବ। ତମେ ମୋତେ ଛୁଞ୍ଚିଟିଏ ଦବ କି ? ଲୋକଟି ଛୁଞ୍ଚି ଦେଲା ନାହିଁ। କିନ୍ତୁ ଦେବାନେବା ବିଷୟରେ ଗୋଟିଏ ଲମ୍ୱା ପ୍ରବଚନ ଶୁଣେଇଲା।

### - ଯୁଦ୍ଧ -

ଦିନେ ରାତିରେ ରାଜ ପ୍ରାସାଦରେ ଏକ ବିରାଟ ଭୋଜିର ଆୟୋଜନ କରାଯାଇଥିଲା। ସେଠିକି ଜଣେ ଲୋକ ଆସି ରଜାଙ୍କ ପାଦ ତଳେ ପଡିଗଲା। ଭୋଜିରେ ଉପସ୍ଥିତ ସବୁ ଲୋକ ସେହି ଲୋକଟିକୁ ଦେଖୁଥିଲେ। ଲୋକଟିର ଗୋଟିଏ ଆଖି ବାହାରି ପଡିଥିଲା ଓ ତହିଁରୁ ରକ୍ତ ଝରୁଥିଲା। ରଜା ଲୋକଟିକୁ ପଚାରିଲେ- ତମର ଅସୁବିଧା କ'ଣ ? ଲୋକଟି ଉତ୍ତର ଦେଲା- ମହାରାଜ ମୁଁ ବୃତ୍ତିରେ ଜଣେ ଚୋର। ଆଜି ରାତି ଯେହେତୁ ଆକାଶରେ ଜହ୍ନ ନଥିଲା, ମୁଁ ମହାଜନ ଘରେ ଚୋରି କରିବା ପାଇଁ ପହଞ୍ଚିଲି। କିନ୍ତୁ ଭୁଲ୍ କ୍ରମେ ମୁଁ ତନ୍ତି ଘରେ ପଶିଗଲି। ତାର ତନ୍ତରେ ବାଜି ମୋ ଆଖି ତାଡି ହୋଇଗଲା। ତେଣୁ ମୋତେ ନ୍ୟାୟ ମିଳୁ।

ରାଜା ତନ୍ତିକୁ ଡକାଇ ଆଣିଲେ ଏବଂ ଆଦେଶ ଦେଲେ- ତନ୍ତିର ଗୋଟିଏ ଆଖି ତାଡିଦିଆଯାଉ। ଧୀରସ୍ଥିର ଭାବରେ ତନ୍ତି କହିଲା- ମହାରାଜ ! ଆପଣଙ୍କର ବିଚାର ଉପରେ ମୋର କିଛି ପ୍ରଶ୍ନ ନାହିଁ। କିନ୍ତୁ ମୋର ଯଦି ଗୋଟିଏ ଆଖି ତାଡି ନେବେ, ମୁଁ

ଲୁଗା ବୁଣିବି କେମିତି ? କିନ୍ତୁ ମୋର ଜଣେ ପଡୋଶୀ କମାର ଅଛି ଯାହାର ଦୁଇଟି ଆଖି ଅଛି । କିନ୍ତୁ ତା'ର ଦୁଇଟି ଆଖି କ'ଣ ହେବ ? ସେଠୁ ରଜାଙ୍କ ଦୂତମାନେ ଯାଇ କମାରର ଗୋଟିଏ ଆଖି ତାଡି ନେଇ ଆସିଲେ ।

ଆଇନ୍ ତାପରେ ସନ୍ତୁଷ୍ଟ ହେଲା ।

### - ନୂଆ ଆନନ୍ଦ -

ଗତ ରାତି ମୁଁ ଆନନ୍ଦ ଅନୁଭବ କରିବାର ଏକ ନୂଆ ତରିକା ଆବିଷ୍କାର କଲି । ଏ ବିଷୟରେ ମୁଁ ପରୀକ୍ଷା କଲା ବେଳକୁ ଜଣେ ଦେବଦୂତ ଓ ସଇତାନ ମୋ ଘର ଆଡକୁ ଆସିଲେ । ମୋ ଘର ବାରଣ୍ଡାରେ ସେମାନେ ମୁଁ ଆବିଷ୍କାର କରିଥିବା ଆନନ୍ଦ ବିଷୟରେ ଝଗଡା କରିବାକୁ ଲାଗିଲେ । ଜଣେ କହୁଥିଲା - ଏଇଟା ହେଉଛି ପାପ । ଅନ୍ୟଜଣକ କହୁଥିଲା- ତାହା ପୂଣ୍ୟ ।

### - ଦୁଇଟି ଗୁମ୍ଫା -

ମୋ ବାପାଙ୍କ ବଗିଚାରେ ଦୁଇଟି ଜନ୍ତା ରହିଥିଲା । ଗୋଟିଏ ଜନ୍ତାରେ ରହୁଥିଲା ସିଂହଟିଏ, ଯାହାକୁ ମୋ ବାପା ନିନାଭା ମରୁଭୂମିରୁ ଆଣିଥିଲେ । ଅନ୍ୟ ଜନ୍ତାରେ ଏକ ଗୀତ ହୀନ ଶୁଆ । ପ୍ରତିଦିନ ସକାଳେ ଶୁଆଟି ଉଠି ସିଂହକୁ କୁହେ- ସୁପ୍ରଭାତ ପ୍ରିୟ ବନ୍ଦୀ ବନ୍ଧୁ ।

## ବାଲି ଓ ଫେଣର କିୟଦଂଶ :

ମୁଁ ଚିରକାଳ ଚାଲୁଛି ଏଇ ବେଳାଭୂମିରେ
ବାଲି ଓ ଫେଣର ବନ୍ଧନୀରେ
ଢେଉ ନିଶ୍ଚୟ ଲିଭେଇଦେବ ମୋର ପାଦଚିହ୍ନ
ପବନ ପୋଛିଦେବ ସବୁ ଫେଣ
କିନ୍ତୁ ସମୁଦ୍ର ଓ ବେଳାଭୂମି
ଶାଶ୍ୱତ ଚିରନ୍ତନ ।।

ଈଶ୍ୱରଙ୍କର ପ୍ରଥମ ଚିନ୍ତା ଥିଲା ଜଣେ ଦେବଦୂତ
ଈଶ୍ୱରଙ୍କର ପ୍ରଥମ ଶବ୍ଦ ଥିଲା ମଣିଷ ।।

* * *

ସ୍ମୃତି ମିଳନର ଏକ ସ୍ୱରୂପ।

ବିସ୍ମୃତି ସ୍ୱାଧୀନତାର ଏକ ସ୍ୱରୂପ।

ଆଶ୍ଚର୍ଯ୍ୟ! କେତେକ ନିର୍ଦ୍ଦିଷ୍ଟ ଆନନ୍ଦର ଇଚ୍ଛା ମୋ
ଯନ୍ତ୍ରଣାର ଅଂଶବିଶେଷ।

ତୁମେ ଅନ୍ଧ, ମୁଁ ମୁକ ଓ ବଧିର
ଆସ, ଆମେ ଆମର ହାତକୁ ଛୁଇଁବା ଓ ନିଜକୁ
ବୁଝିବା।

ତମେ ମୋତେ କାନ ଦିଅ
ମୁଁ ତୁମକୁ ଶୁଣିବା ଲାଗି ସ୍ୱର ଦେବି।

ମୁକ ହିଁ କେବଳ କଥା କହୁଥିବା ମଣିଷକୁ ଈର୍ଷା କରେ।

ପ୍ରେମ ହେଉଛି ପ୍ରେମିକ ଓ ପ୍ରେମିକା ଭିତରେ ଏକମାତ୍ର ପରଦା।

ଯେବେ ପୁରୁଷର ହାତ ନାରୀର ହାତକୁ ଛୁଏଁ ଉଭୟେ ଅସୀମତାର ହୃଦୟକୁ ଛୁଅଁନ୍ତି।

ପ୍ରତ୍ୟେକ ପୁରୁଷ ଦୁଇଜଣ ନାରୀକୁ ପ୍ରେମ କରିଥାଏ। ପ୍ରଥମଟି ତା କଳ୍ପନାର ସୃଷ୍ଟି। ଅନ୍ୟ ଜଣକ ଏଯାଏଁ ଜନ୍ମ ହୋଇନାହିଁ।

ପ୍ରେମ ଯଦି ପ୍ରତିଦିନ ନୂତନ ରୂପ ନିଏ ନାହିଁ ତାହା ଅଭ୍ୟାସ ଓ ପରିଶେଷରେ ଦାସତ୍ୱରେ ପରିଣତ ହୋଇଯାଏ।

ପ୍ରେମ ସହ ସନ୍ଦେହର କିଛି ବି ସଂପର୍କ ନାହିଁ।

ପ୍ରେମ ହେଉଛି ଆଲୋକର ଏକ ଶବ୍‌ଦ ଯାହା ଆଲୋକର ହାତରେ ଆଲୋକର ପୃଷ୍ଠାରେ ଲେଖାଯାଇଥାଏ।

ତୁମର ହୃଦୟ ଯଦି ଜ୍ୱାଳାମୁଖି
ତୁମ ହାତରେ ଫୁଲ ଫୁଟିବ ବୋଲି
ତୁମେ ଭାବିପାରୁଛ କେମିତି ?

* * *

ଜଣେ ନିର୍ବୋଧ ଏବଂ ଜଣେ ପ୍ରଜ୍ଞାବାନ ବ୍ୟକ୍ତି ହିଁ ମଣିଷ ତିଆରି କରିପାରନ୍ତି। ଏବଂ ସେମାନେ ହିଁ ଈଶ୍ୱରଙ୍କ ହୃଦୟର ନିକଟବର୍ତ୍ତୀ।

ଯଦି ଭଲ ଓ ମନ୍ଦ ଉଭୟେ ସତ୍ୟ ତେବେ ମୋର ଜୀବନ ଏକ ପ୍ରଲମ୍ବିତ ଅପରାଧ।
ଆମେ ସମସ୍ତେ ଏଠି ବନ୍ଦୀ,
କିଛି ଜଣ ରୁଦ୍ଧ କାରାଗାର କକ୍ଷରେ
ଓ ଆଉ କେତେଜଣ ଝର୍କାଥିବା କୋଠରୀରେ।

ହଜାର ବର୍ଷ ଆଗରୁ ମୋର ପଡୋଶୀ
ମୋତେ କହିଥିଲେ; ସେ ଜୀବନକୁ ଘୃଣା କରନ୍ତି
କାରଣ ଜୀବନ ଯନ୍ତ୍ରଣା ଛଡା ଆଉ କିଛି ନୁହେଁ।
ଗତକାଲି ମୁଁ ଶ୍ମଶାନ ବାଟ ଦେଇ ଆସିଲି
ଓ ତାଙ୍କର କବର ଉପରେ
ଜୀବନ ନାଚୁଥିବାର ଦେଖିଲି।।

ସୌନ୍ଦର୍ଯ୍ୟ ବାହାରେ ଧର୍ମ ନାହିଁ କି ବିଜ୍ଞାନ ନାହିଁ।

ବାସ୍ତବରେ ସେ ହେଉଛି ମହାନ୍
ଯିଏ କା'ର ମାଲିକ ନୁହେଁ
ବା କା'ର ମାଲିକାନା ସ୍ୱୀକାର କରେ ନାହିଁ।

ମୁଁ ଜଣେ ଯାତ୍ରୀ ଓ ନାବିକ।
ଏବଂ ପ୍ରତ୍ୟେକ ଦିନ ମୁଁ ମୋର ଆତ୍ମାରେ
ନୂଆଁ ନୂଆଁ ମୂଳକର ଆବିଷ୍କାର କରେ।

ମଣିଷ ହେଉଛି ଦୁଇଟି ମଣିଷ
ପ୍ରଥମଟି ଅନ୍ଧାରରେ ଜାଗେ
ଓ ଅନ୍ୟଟି ଆଲୋକରେ ଶୋଇଯାଏ।

ଜଣେ କବି ଓ ଗବେଷକ ମଝିରେ
ଗୋଟେ ସବୁଜ ପ୍ରାନ୍ତର ରହିଥାଏ
ଗବେଷକ ସେ ପ୍ରାନ୍ତର ଅତିକ୍ରମ କଲେ
ସେ ଜ୍ଞାନୀ ପାଲଟିଯାଏ
କିନ୍ତୁ କବି ପାଲଟିଯାଏ ଦେବଦୂତ।

ସତ୍ୟ ଶୁଣୁଥିବା ଲୋକ
ସତ୍ୟ କହୁଥିବା ଲୋକଠୁ କିଛି କମ୍ ନୁହେଁ।

ବଦାନ୍ୟତା ହେଉଛି, ନିଜ ସାମର୍ଥ୍ୟରୁ ଅଧିକ ଦାନ ଦେବା
ଏବଂ ଗର୍ବ ହେଉଛି, ଆବଶ୍ୟକତାଠାରୁ ଅଧିକ ନେଇଯିବା।

ଌ

ମହାନ ସୌନ୍ଦର୍ଯ୍ୟ ମୋତେ ଆବଦ୍ଧ କରିଥାଏ
ମୁଁ କିନ୍ତୁ ସେ ସୌନ୍ଦର୍ଯ୍ୟକୁ ବେଶୀ ମହାନ
ବୋଲି ଭାବେ, ଯାହା ମୋତେ
ତା'ନିଜଠୁ ମୁକ୍ତ କରିଦିଏ।

ହଁ, ନିର୍ବାଣ ସେଇଠି ଅଛି।
ଘାସ ପଡିଆରେ ଛେଳି ଚରାଇବାରେ
ନିଜ ପିଲାକୁ ଶୋଇବାରେ
ଏବଂ କବିତାର ଶେଷ ଧାଡି ଲେଖିପାରିବାରେ।

ଦୁଃଖ ହେଉଛି ଦୁଇଟି ବଗିଚାର
ମଧ୍ୟବର୍ତ୍ତୀ କାନ୍ଥ।

ମୋର ବାପା-ମା' ସନ୍ତାନଟିଏ
କାମନା କରି ମୋତେ ପାଇଲେ
ମୁଁ ବାପା-ମା' କାମନା କରି
ରାତି ଓ ସମୁଦ୍ରକୁ ପାଇଲି।

୦୦୦

# ବିବାଦୀୟ ବାଦ୍‌ଶାହଙ୍କ ବାହୁଡା ବିଜୟ :
# ପୁଣିଥରେ ସଲ୍‌ମାନ ରଶ୍‌ଦି

ନିର୍ବାସନର ଯନ୍ତ୍ରଣା, ମୃତ୍ୟୁଦଣ୍ଡକୁ ଲୁଚି ଲୁଚି ଜିଇଁ ରହିବାର ଆଶଙ୍କାଗ୍ରସ୍ତ ଜୀବନ, ପ୍ରେମର ଉତ୍ତେଜକ ବନ୍ଧନୀ, ତା'ରି ଭିତରେ ସଲ୍‌ମାନ ରୁଶଦି ବାରମ୍ବାର ଗୀତ ଗାଆନ୍ତି ଫିନିକ୍‌ସ୍ ଚଢେଇ ପରି। ଗ୍ରୀକ୍ ପୁରାଣର ଫିନିକ୍‌ସ ନିଜ ଗୀତରେ ଜଳିଯାଉଥିବାର ଓ ପୁଣି ଜନ୍ମ ନେଉଥିବା ବୃତ୍ତାନ୍ତର ନବ କଳେବର; ସଲ୍‌ମାନ ରୁଶ୍‌ଦିଙ୍କ ଜୀବନ। ନିଜର ଲେଖା ହିଁ ତାଙ୍କ ପାଇଁ ସବୁଠୁ ବଡ ସମସ୍ୟା। ନିଜ ମସ୍ତିସ୍କର ମୁକ୍ତ ବିଚାର ତାଙ୍କୁ ସବୁବେଳେ ଠିଆ କରେଇ ଦିଏ ଖଣ୍ଡାଧାରରେ। ବହିଟିଏ ବାହାରୁ ବାହାରୁ ଆରମ୍ଭ ହୋଇଯାଏ ବିବାଦ। ବହୁ ଚର୍ଚ୍ଚିତ 'ସଟାନିକ୍ ଭର୍ସେସ୍' ହେଉ କି ୧୯୯୭ରେ ଭାରତୀୟ ପ୍ରାନ୍ତୀୟ ଭାଷା-ସାହିତ୍ୟ ଉପରେ ତାଙ୍କର ମନ୍ତବ୍ୟ। The Moor's last sighରେ ନେହେରୁ ଚର୍ଚ୍ଚା ହେଉ କି ପଦ୍ମାଲକ୍ଷ୍ମୀଙ୍କ ସହ ତାଙ୍କ ବିବାହ, ସବୁବେଳେ ବିବଦମାନ ରୁଶ୍‌ଦି। କଲମରୁ ଝରୁଥିବା ପ୍ରତ୍ୟେକ ଅକ୍ଷର ତାଙ୍କ ପାଇଁ ସୃଷ୍ଟି କରେ ବିବାଦ। ଲଜ୍ଜିତ, ଅପମାନିତ ରୁଶ୍‌ଦି କିନ୍ତୁ କେବେ ହାର ମାନନ୍ତି ନାହିଁ। ବିଚାରର ସ୍ୱାଧୀନତାକୁ ବଳି ଦେଇ କାପୁରୁଷ ପରି ଲେଖକୀୟ ଜୀବନ ପ୍ରତି ତାଙ୍କର ପ୍ରଚଣ୍ଡ ଘୃଣା। ସାରା ପୃଥିବୀର ମୁସଲମାନ ଯେତେବେଳେ ତାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ ସେତେବେଳେ ବି ଆତ୍ମଗୋପନରେ ଥିବା ରୁଶ୍‌ଦିଙ୍କ ଆତ୍ମବିଶ୍ୱାସ ଟଳମଳ ହୋଇନଥିଲା। ଇସ୍ଲାମିକ୍ ମୁଲ୍ଲାମାନଙ୍କର ଅପମାନକୁ ଚଲୁ କରିପାରିବାର ସାହସ ଓ ସାମର୍ଥ୍ୟରେ ରୁଶ୍‌ଦି ବଳୀୟାନ। The Ground Beneath her feetରେ ସିଏ ଲେଖନ୍ତି

Insults are mysteries. What seems to the bystander to be the cruelest, most destructive sledgehammer of and assault, where I slutt! tart! can leave its target undamaged, while an apparantly lesser gibe, Thank armour, you're noth-

ing to me, you are less than the dirt on the soles of my shoes and strike directly at the heart.

ଯେତେଥର ରୁଶ୍‌ଦିଙ୍କ ଉପରେ ଆକ୍ରମଣ ହୋଇଛି, ସେତେ ଅଧିକ ସାହସ ଓ ସାମର୍ଥ୍ୟ ପ୍ରତିଫଳିତ ହୋଇଛି ତାଙ୍କ କଲମରେ। 'ସଟାନିକ୍ ଭର୍ସେସ୍'ର ପ୍ରକାଶନ ପରେ ୧୪, ଫେବୃୟାରୀ ୧୯୮୯ରେ ଇରାନ୍‌ର ଆଧ୍ୟାତ୍ମିକ ଗୁରୁ ଆୟାତୋଲ୍ଲା ଖୋମିନୀ ରୁଶ୍‌ଦିଙ୍କ ବିରୁଦ୍ଧରେ ମୃତ୍ୟୁଦଣ୍ଡାଦେଶ ଜାରି କରିଛନ୍ତି ଏବଂ ଆଶ୍ଚର୍ଯ୍ୟଜନକ ଭାବରେ ପୃଥିବୀର ପ୍ରାୟ ସମସ୍ତ ଇସ୍ଲାମିକ୍ ବୁଦ୍ଧିଜୀବି ଖୋମିନୀଙ୍କୁ ସମର୍ଥନ ଜଣାଇଛନ୍ତି। କିନ୍ତୁ ରୁଶ୍‌ଦି ଡରିଯାଇ ନାହାନ୍ତି। ତାଙ୍କ କଲମ ସେମିତି ଲେଖିଚାଲିଛି ଗୋଟେ ପରେଗୋଟେ ଉପନ୍ୟାସ। ଉପନ୍ୟାସର ମୃତ୍ୟୁ ଘୋଷଣା କରୁଥିବା ବୁଦ୍ଧିଜୀବିଙ୍କ ପାଇଁ ସଲ୍‌ମାନ୍ ରୁଶ୍‌ଦି ଏବଂ ତାଙ୍କ ଉପନ୍ୟାସର ଅବାରିତ ଧାରା ବିରାଟ ଆହ୍ୱାନ।

My terra infirma, my maelstorm, my Cornucopia, my Crowd, My too muchness, my everything at once, my hug me my fable, my mother, my father and my first great truth...... I may not comprehend what you are becoming, what Perhaps you already are, but I am old enough to say that this newself of yours is an entity I no longer want or need, to understand. ଏ ହେଉଛି ରୁଶ୍‌ଦିଙ୍କର ଭାରତ ପ୍ରୀତି। ବମ୍ବେରେ ଜନ୍ମିତ ରୁଶ୍‌ଦି ଆଜିଯାଏଁ ଭାରତ ପ୍ରତି ପ୍ରଚୁର ଦୁର୍ବଳ। ମଧ୍ୟରାତ୍ରର ସ୍ୱାଧୀନତା ପରେ ଭାରତର ବାସ୍ତବ ଚିତ୍ରର ଅଙ୍କନ କରିଛନ୍ତି ରୁଶ୍‌ଦ। ମଧ୍ୟରାତ୍ରର ସ୍ୱାଧୀନତା ପରେ ଭାରତର ବାସ୍ତବ ଚିତ୍ରର ଅଙ୍କନ କରି ରୁଶ୍‌ଦି ସୃଷ୍ଟି କରିଛନ୍ତି ଅନେକ ଉପନ୍ୟାସ। ଭାରତ ସହ ତାଙ୍କର ଅନୁରାଗ ବିରାଗର ସଂପର୍କ ଜାରି ରହିଛି ଆଜିବି। ୨୦୦୫ରେ ପ୍ରକାଶିତ ତାଙ୍କର ନୂତନ ଉପନ୍ୟାସ 'Shalimar The Clown' ରେ ଇସ୍ଲାମିକ୍ ସନ୍ତ୍ରାସବାଦର ଜଘନ୍ୟ ଛବି ଅଙ୍କିତ। ଇସ୍ଲାମିକ୍ ସନ୍ତ୍ରାସବାଦ ଉପରେ ଆକ୍ରମଣ ସହ ଇସ୍ଲାମିକ୍ ସଂସ୍କାର ଲାଗି ତାଙ୍କର ବକ୍ତବ୍ୟ ପୁଣିଥରେ ଝଡ ସୃଷ୍ଟି କରିଛି। 'ୱାଶିଂଟନ ପୋଷ୍ଟ'ରେ ଗତ ୭ ଅଗଷ୍ଟରେ ତାଙ୍କ ଲେଖା The Right Time for Islamic Reformationରେ ରୁଶ୍‌ଦି ଇସ୍ଲାମିକ୍ ଚିନ୍ତାର ସଂସ୍କାର ପ୍ରସ୍ତାବ ଦେବା ସହ ବ୍ରିଟେନ୍ ମୁସ୍‌ଲିମ୍ କାଉନ୍‌ସିଲର ମୁଖ୍ୟ ସାର୍ ଇକ୍‌ବାଲ୍ ସାକ୍ରାନିଙ୍କୁ କଠୋର ସମାଲୋଚନା କରିଛନ୍ତି। ଟୋନି ବ୍ଲେୟାରଙ୍କ ଦୋମୁହାଁ ନୀତିର ଦୃଢ ଆଲୋଚନା କରି ଇସ୍ଲାମିକ୍ ଜୀବନର ସଂକଟ ବିଷୟରେ ରୁଶ୍‌ଦି କେତୋଟି ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ଦେଇଛନ୍ତି।

୯/୧୧ ପରବର୍ତ୍ତୀ ପୃଥିବୀରେ ଇସ୍ଲାମ୍ ପ୍ରତି ଯେଉଁ ଭୟ ଓ ଘୃଣାର ସୃଷ୍ଟି, ତାରି ବିରୁଦ୍ଧରେ ଯଥେଷ୍ଟ ସ୍ପଷ୍ଟ ଶବ୍ଦରେ ରୁଶ୍‌ଦି ତାଙ୍କର ପ୍ରତିକ୍ରିୟା ବ୍ୟକ୍ତ କରିଛନ୍ତି। ତାଙ୍କ ଉପରୁ 'ଫତ୍ୱା' ଉଠିଗଲା ପରେ, ଏବେ ସେ ଏକ ସଂସ୍କାରକାମୀ ମୁସଲମାନ ଲେଖକ। ଧର୍ମ ଭିତରେ ବଢ଼ି ଉଠୁଥିବା ହିଂସା ଓ କ୍ରୋଧର ବାତାବରଣକୁ ଶାନ୍ତ କରି, ଇସ୍ଲାମିୟତ୍‌ର ଏକ ଆଧୁନିକ ସଂସ୍କରଣ, ଯାହା କି ବେଶୀ ସହିଷ୍ଣୁ, ବେଶୀ ଖୋଲା ହୋଇଥିବ ତାକୁ ପ୍ରସ୍ତୁତ କରିବାର ଦୃପ୍ତ ଆହ୍ୱାନର ହିଛି ରୁଶ୍‌ଦିଙ୍କ ଲେଖାରେ। ତାଙ୍କ ନୂତନ ଉପନ୍ୟାସର ନାୟକ ବି ଭଙ୍ଗା ହୃଦୟରେ ପାଲଟିଯାଇଛି ସନ୍ତ୍ରାସବାଦୀ। ରୁଶ୍‌ଦିଙ୍କ ନୂଆଁ ସ୍ୱରୂପକୁ ପୃଥିବୀର ପାଠକ କେମିତି ଗ୍ରହଣ କରୁଛନ୍ତି ଦେଖାଯାଉ।



# ପ୍ରଜାପତିର ପ୍ରଣୟ ବଗିଚା
# କବିଗୁରୁ ରବୀନ୍ଦ୍ରନାଥଙ୍କ ପ୍ରେମଗାଥା

ଏକଦା ରବୀନ୍ଦ୍ର ସାହିତ୍ୟର ମହାନ ଗବେଷକ ସି. ୱିଲିଅମ୍ ରାଡିସ୍ ଖୁବ୍ ସୁନ୍ଦର ଦୁଇଟି ପ୍ରଶ୍ନ ଉଠେଇଥିଲେ। "ସତରେ କ'ଣ ଦୁଇଜଣ ରବୀନ୍ଦ୍ରନାଥ ଟାଗୋର ଅଛନ୍ତି ? ନା, ଜଣେ ଅଛନ୍ତି ରବୀନ୍ଦ୍ରନାଥ ଆଉ ଜଣେ ଟାଗୋର ?" ରବୀନ୍ଦ୍ର ନାଥଙ୍କ ସାହିତ୍ୟ ଓ ଜୀବନ ଅନୁଶୀଳନ କଲେ ତାଙ୍କ ବ୍ୟକ୍ତିତ୍ୱର ଦୁଇଟି ଭିନ୍ନ ପରିପ୍ରେକ୍ଷୀରେ ସଂଘର୍ଷ ଓ ସହାବସ୍ଥାନର ଚିତ୍ର ଆମେ ପାଇଥାଉ। ଗୁରୁଦେବ, କବିଗୁରୁ, ବିଶ୍ୱକବି, ସାହିତ୍ୟ ପାଇଁ ଏସିଆ ମହାଦେଶର ସର୍ବପ୍ରଥମ ନୋବେଲ ବିଜେତା, ଶାନ୍ତି ନିକେତନର ପ୍ରତିଷ୍ଠାତା। ଏମିତି ଏମିତି ବିଭୂଷଣର ଅସୁମାରି ତାଲିକା। ତାଙ୍କ ଶ୍ରେଷ୍ଠ-ମହାନ-ଆଦର୍ଶ ବ୍ୟକ୍ତିତ୍ୱର ଅପରପାର୍ଶ୍ୱରେ ଆଉ ଜଣେ 'ରୋବି'ଙ୍କୁ ଖୁବ୍ କମ୍ ଲୋକ ଜାଣନ୍ତି। କବିତାର ପ୍ରେରଣା ଆସେ ଯେଉଁ ପରିଧିରୁ, ସେ ପରିଧିର ନାଁ ପ୍ରେମ ଓ ଜୀବନ ତମାମ୍ ରବୀନ୍ଦ୍ରନାଥଙ୍କ ବିଚରଣ ପ୍ରେମର ବିହ୍ୱଳ ପରିଧିରେ। ତାଙ୍କ କବିତାର ଗୀତିମୟ ଆବେଦନ ଓ ତାଙ୍କ ପ୍ରେମର ଆଶ୍ଚର୍ଯ୍ୟ ଅଭିସାର, ଉଭୟ ଆକର୍ଷିତ କରିଛି ରବୀନ୍ଦ୍ର ପ୍ରେମୀମାନଙ୍କୁ। କବି ଭାବରେ ଯେତିକି, ପ୍ରେମିକ ଭାବେର ତତୋଧିକ ରବୀନ୍ଦ୍ର ଚର୍ଚ୍ଚା ହେଉଛି ବଙ୍ଗଳା ଓ ଇଂରାଜୀ ପତ୍ର ପତ୍ରିକାରେ। ସୌମ୍ୟଦର୍ଶନ ରବୀନ୍ଦ୍ରନାଥଙ୍କର ସମ୍ମୋହନ ପାଗଳ କରିଛି ବହୁ ରୂପସୀ-ପ୍ରତିଭାମୟୀ ଲଳନାଂକୁ।

କିଛି ବର୍ଷ ବଙ୍ଗଳାର ପ୍ରଖ୍ୟାତ ଲେଖକ ସୁନୀଲ ଗାଙ୍ଗୁଲିଙ୍କର 'ସେଇ ସମୟ'ର ଅନ୍ୟ ଭାଗ 'ପ୍ରଥମ ଆଲୋ' ପ୍ରକାଶିତ ହେଲା ପରେ କବିଗୁରୁଙ୍କ ପ୍ରେମ କାହାଣୀକୁ ନେଇ ସରଗରମ ହୋଇଉଠିଥିଲା ବଙ୍ଗଳା ସାହିତ୍ୟ। 'ପ୍ରଥମ ଆଲୋ'ର ନବମ ଅଧ୍ୟାୟରେ ରବୀନ୍ଦ୍ର ନାଥଙ୍କର ଭାଉଜ କାଦମ୍ବରୀଙ୍କ ସହ ରହିଥିବା ପ୍ରେମ ସଂପର୍କର ଗଳ୍ପରୂପକୁ ନେଇ ଝଡ ଉଠିଥିଲା ବଙ୍ଗ ସାହିତ୍ୟରେ। କାଦମ୍ବରୀ ଥିଲେ କବିଗୁରୁଙ୍କ ବଡ ଭାଇ ଜ୍ୟୋତିରିନ୍ଦ୍ରନାଥଙ୍କ ପତ୍ନୀ ଏବଂ ବୟସରେ ରବୀନ୍ଦ୍ରଙ୍କ ଠାରୁ ୧୮ ମାସ ବଡ।

ଉଭୟଙ୍କ ଭିତରେ ରହିଥିବା ଗୋପନ ପ୍ରେମ ସଂପର୍କକୁ ନେଇ ଅନେକ ଗୁଜବ ଶୁଣିବାକୁ ମିଳିଥାଏ। ରବୀନ୍ଦ୍ରନାଥଙ୍କ ବିବାହର ମାସେ ପରେ କାଦମ୍ବରୀ ଦେବୀ ଆତ୍ମହତ୍ୟା କରିଥିବାରୁ, ଉଭୟଙ୍କୁ ନେଇ ଗୁଜବ ଓ କାହାଣୀର ଅନ୍ତ ଘଟୁ ନାହିଁ। କବିଗୁରୁଙ୍କ ପ୍ରେମ କାହାଣୀକୁ ନେଇ ମଝିରେ ମଝିରେ ବଙ୍ଗଳା ସାହିତ୍ୟରେ ଉତ୍ତେଜନା ଖେଳିଯାଏ। 'ପ୍ରଥମ ଆଲୋ' ପ୍ରକାଶିତ ହେଲା ପରେ ସୁନିଲ ଗାଙ୍ଗୁଲି ଉପନ୍ୟାସର କାହାଣୀ ଗଢିବାକୁ ଯାଇ ସତ୍ୟକୁ ବଳି ଦେଇଛନ୍ତି ବୋଲି ଅନେକ ଆଲୋଚକ ଅଭିଯୋଗ କରିଥିଲେ। ତା'ର ଜୱାବ ସ୍ୱଭାବ ସୁଲଭ ଭାବରେ ଦେଇଛନ୍ତି ସୁନିଲ୍ ବାବୁ। ତାଙ୍କ ମତରେ, "ରବୀନ୍ଦ୍ରନାଥ ରାତାରାତି ମହାନ୍ ହୋଇନାହାନ୍ତି। ସାଧାରଣ ମଣିଷଙ୍କ ପରି ତାଙ୍କର ବି କିଛି ଦୋଷ ଦୁର୍ବଳତା ରହିଥିଲା।"

## ପ୍ରଥମ ପ୍ରେମ : ଆନ୍ନା ତିରିଖୁଦ୍

ରବୀନ୍ଦ୍ର ନାଥ ତାଙ୍କର "ଛେଲେବେଲା" ବା ପିଲାଦିନ ସଂସ୍ମରଣରେ ଆନ୍ନା ତିର୍ଖୁଦ୍‌ଙ୍କ ସହ ତାଙ୍କ ସଂପର୍କର ଅବତାରଣା କରିଛନ୍ତି। ଲଣ୍ଡନ ଫେରନ୍ତା ଆନ୍ନାଙ୍କୁ ନେଇ ପ୍ରଥମେ କବିତା ଲେଖିଥିଲେ ସେ। କବିଗୁରୁଙ୍କ ନିଜ ଭାଷାରେ; "ସେ (ଆନ୍ନା) ମୋତେ ତାଙ୍କର ଡାକ ନାଁଟିଏ ଦେବାକୁ କହିଥିଲେ ଏବଂ ମୁଁ ତାଙ୍କୁ ନାଁଟିଏ ଦେଇଥିଲି, ଯାହା ତାଙ୍କୁ ଖୁବ୍ ଭଲ ଲାଗିଥିଲା। ସେଇ ନାଁକୁ ଯୋଡି ମୁଁ କବିତାଟିଏ ଲେଖିଲି। ଦିନେ ସକାଳେ ସେଇ କବିତାଟିକୁ ଭୈରବୀ ରାଗରେ ମୁଁ ଗାଇଥିଲି। ମୋ କବିତା ଶୁଣି ସେ କହିଥିଲେ- "କବି, ତମେ ଯଦି ଗୀତ ଗାଇବାର ମୁଁ ଶୁଣିବି, ବୋଧେ ମଶାଣୀରୁ ବି ମୁଁ ଉଠି ଆସିବି। x x x ବୋଧେ ସେ ହିଁ ପ୍ରଥମେ ମୋତେ କହିଥିଲେ ଯେ, ମୁଁ ଦେଖିବାକୁ ସୁନ୍ଦର। ଭିନ୍ନ ଭିନ୍ନ ଭାବରେ ସେ ମୋତେ ପ୍ରଶଂସା କରୁଥିଲେ। ଥରେ ସେ ମୋତେ କହିଥିଲେ, ତମେ ଶପଥ କର ଯେ, ତମେ କେବେ ବି ଦାଢି ରଖିବ ନାହିଁ। ତମ ମୁହଁର ସୌନ୍ଦର୍ଯ୍ୟ ଢାଙ୍କି ହେଉ, ଏହା କେବେ ମୁଁ ଚାହିଁବି ନାହିଁ। ଏକଥା ସଭିଏଁ ଜାଣନ୍ତି ଯେ, ତାଙ୍କୁ ଦେଇଥିବା ପ୍ରତିଶ୍ରୁତି ମୁଁ ରଖିପାରି ନାହିଁ। ତାଙ୍କ କଥା ମାନୁ ନଥିବାର ପ୍ରମାଣ ପାଇବା ଆଗରୁ ସେ ୧୮୯୧ରେ ମରିଗଲେ।" କବି ଆନ୍ନାଙ୍କ ଡାକ ନାଁ ଦେଇଥିଲେ ନଳିନୀ। କବିଙ୍କୁ ୧୭ ବର୍ଷ ବୟସ ହୋଇଥିବା ବେଳେ ଆନ୍ନା ଥିଲେ ୨୩ ବର୍ଷର ପରିପୂର୍ଣ୍ଣା ସୁନ୍ଦରୀ। ୧୮୭୮ ସେପ୍ଟେମ୍ବର ମାସରେ ୬ ସପ୍ତାହ ଲାଗି ଗଢି ଉଠିଥିବା ଏଇ ସଂପର୍କକୁ ନେଇ ଏକ ରହସ୍ୟମୟ ପରିସ୍ଥିତି ଉପୁଜିଥିଲା, କବିଙ୍କ ଅନ୍ୟ ଏକ ସାକ୍ଷାତକାରକୁ ନେଇ। ସଂଗୀତ ନିର୍ଦ୍ଦେଶକ ଅତୁଲ ପ୍ରସାଦ ସେନ ଓ ଦିଲ୍ଲୀପ ରାୟଙ୍କୁ ଦେଇଥିବା ଏକ

ସାକ୍ଷାତକାରରେ କବି ଆନ୍ନାଙ୍କ ବୟସ ଷୋହଳ ବୋଲି କହିଥିଲେ। ବିଶିଷ୍ଟ ବଙ୍ଗାଳୀ ଆଲୋଚକ ନିତ୍ୟପ୍ରିୟ ଘୋଷ, ଏହା କବିଙ୍କ ସ୍ମୃତି ବିଭ୍ରମ ନା କବି ଜାଣିଶୁଣି ଆନ୍ନାଙ୍କୁ ତାଙ୍କ ସମବୟସ୍କ କହିଛନ୍ତି ବୋଲି ପ୍ରଶ୍ନ ଉଠାଇଛନ୍ତି। ଆନ୍ନାଙ୍କ ସହ ତାଙ୍କର ବାହୁ ଟଣାଟଣି ଖେଳ ଏବଂ ଆନ୍ନା ଆସି ପଛପଟୁ ତାଙ୍କ ଆଖି ବୁଜି ଦେଉଥିବାର ବିହ୍ୱଳ ଅନୁଭବକୁ କବି ସ୍ମରଣ କରିଛନ୍ତି 'ପିଲାଦିନ'ରେ। ଥରେ ଆନ୍ନା କବିଙ୍କୁ କହିଲେ, ଯଦି ଶୋଇଥିବା କୌଣସି ଯୁବତୀର ହାତମୋଜା ଯୁବକଜଣେ ଚୋରାଇ ନିଏ, ତେବେ ସେ ଯୁବତୀଟିର ଚୁମ୍ବନ ପାଇବାର ହକ୍‌ଦାର। ଏତକି କହି ସେ ଶୋଇପଡିଲେ ଓ ତାଙ୍କ ହାତମୋଜା ପଲଙ୍କରେ ପଡି ରହିଥିଲା। କିନ୍ତୁ କିଶୋର କବି ମୋଜା ଚୋରେଇ ନେଇ ପାରିନଥିଲେ।

କବି ଗୁରୁଙ୍କ ପ୍ରେମକାହାଣୀକୁ ନେଇ ହଜାର ଚର୍ଚ୍ଚା ହୋଇଛି। ଅନେକ ସୁନ୍ଦରୀଙ୍କ ସହ ଯୋଖାଯାଇଛି ତାଙ୍କର ନାମ। ସେ କିନ୍ତୁ ତାଙ୍କର ପ୍ରଥମ ପ୍ରେମ (ତାଙ୍କ ସ୍ୱୀକୃତ ଏକ ମାତ୍ର ପ୍ରେମ) ଭାବରେ ଆନ୍ନାଙ୍କୁ କେବେ ବି ଭୁଲି ପାରିନଥିଲେ।

## ରାନୁ, ଇନ୍ଦିରା, କାଦମ୍ବରୀ, ଭିକ୍ଟୋରିଆ : ଅନେକ ଫୁଲ, ଏକଇ କବି।

ଶାନ୍ତି ନିକେତନର ଅନେକ ପୁରୁଣା ଅନ୍ତେବାସୀଙ୍କ ମତରେ କବି ନାରୀମାନଙ୍କ ସଖ୍ୟ ଓ ସାନିଧ୍ୟକୁ ବେଶୀ ଉପଭୋଗ କରୁଥିଲେ। ପୁରୁଷଙ୍କ ଗହଣରେ ବେଶୀ ସମୟ ରହିବାକୁ ସେ ଜମାରୁ ପସନ୍ଦ କରୁନଥିଲେ। ସେଥିପାଇଁ ମହାନ୍ ଔପନ୍ୟାସିକ ଶରତ ଚନ୍ଦ୍ର କହିଥିଲେ "ଟାଗୋରଙ୍କ ମଧ୍ୟ ଅନ୍ୟ ସାଧାରଣ ମଣିଷଙ୍କ ପରି ଦୋଷ ଦୁର୍ବଳତା ରହିଛି। କିନ୍ତୁ ସେ ଯେହେତୁ ଗୁରୁଦେବ, ତାଙ୍କ ଦୁର୍ବଳତା ଉପରେ କେହି ବି ଆଙ୍ଗୁଠି ଉଠେଇବେ ନାହିଁ। କିନ୍ତୁ ଦୋଷ କଲେ ଆମେ ଧରାପଡିବାକୁ ବାଧ୍ୟ।"

ଇନ୍ଦିରା ଦେବୀ ଚୌଧୁରୀ ଥିଲେ କବିଙ୍କ ଝିଆରୀ ଓ କବି ପତ୍ନୀ ମୃଣାଳିନୀଙ୍କର ସମବୟସ୍କା। ଗୁରୁଦେବ ଇନ୍ଦିରାଙ୍କ ପାଖକୁ ଲେଖିଥିବା ଅନେକ ପତ୍ରରେ ଏକ ପ୍ରେମ ସଂପର୍କର ଆଭାସ ରହିଛି ବୋଲି ଆଲୋଚକମାନଙ୍କର ମତ। ଠାକୁର ପରିବାରରେ ଦଶ ବର୍ଷରୁ ଝିଅମାନଙ୍କ ବିବାହ କରିଦିଆଯାଉଥିଲା। କିନ୍ତୁ ଇନ୍ଦିରା ୧୪ ବର୍ଷ ଯାଏଁ ଥିଲେ ଅବିବହିତା। ଇନ୍ଦିରାଙ୍କ ପାଖକୁ କବି ଲେଖିଥିବା ଅନେକ ପତ୍ରରୁ ସେମାନଙ୍କ ଭିତରେ ରହିଥିବା ଗଭୀର ପ୍ରଣୟ ଇଚ୍ଛା ସ୍ପଷ୍ଟ ପ୍ରକଟିତ ବୋଲି ସୁନୀଲ ଗାଙ୍ଗୁଲିଙ୍କ ମତ। ଆହୁରି ମଧ୍ୟ, ସେସବୁ ଚିଠିରେ ଇନ୍ଦିରାଙ୍କ କଇମଗାର ପଡି, କାହାଣୀ ବ୍ୟକ୍ତ କରୁଥିବା ଧାଡିଗୁଡିକ ଆଉ ପଢି ହେଉ ନଥିବାରୁ ଏବଂ କଇମଗାର ସ୍ୱୟଂ ଇନ୍ଦିରାଙ୍କର ହୋଇଥିବାରୁ ଇନ୍ଦିରା ଓ ରବୀନ୍ଦ୍ର ନାଥଙ୍କ ପ୍ରେମ ସଂପର୍କ ସ୍ପଷ୍ଟ ହୋଇଯାଏ।

ଆର୍ଜେଣ୍ଟିନାର ଭିକ୍ଟୋରିଆ ଓକାମ୍ପୋ ଥିଲେ କବିଗୁରୁଙ୍କ ଜୀବନର ଅନ୍ୟତମ ମଧୁମାଳତୀ। ଭିକ୍ଟୋରିଆ ଥିଲେ କବିତାର ପରମ ପ୍ରେମିକା। ପେରୁରେ ଅସୁସ୍ଥ ହୋଇ ପଡିଥିବା ରବୀନ୍ଦ୍ର ନାଥଙ୍କୁ ବିଶ୍ରାମ ନେବାକୁ ଡାକ୍ତରମାନେ ପରାମର୍ଶ ଦେଇଥିଲେ। ଭିକ୍ଟୋରିଆ ତାଙ୍କ ନିଜର ଏକ ହୀରା ଗଜର ବିକ୍ରି କରି ସେଇ ପଇସାରେ କବି ଗୁରୁଙ୍କ ପାଇଁ ପ୍ଲେଟ ନଈ କୂଳରେ ଏକ ସୁନ୍ଦର ଘରର ବ୍ୟବସ୍ଥା କରିଥିଲେ। ସେ ଥିଲେ କବିଙ୍କ କବିତାର ଶ୍ରେଷ୍ଠତମ ପ୍ରେମିକା। କବିଙ୍କ ସେକ୍ରେଟାରୀ Leonard Elmhrist ତାଙ୍କ ବ୍ରିଟିଶ ପ୍ରେମିକାଙ୍କ ପାଖକୁ ଲେଖଥିବା ଏକ ଚିଠିରେ ଲେଖିଛନ୍ତି, "Our hostess (Victoria) was in love with him (Tagore)... she was in a hurry to establish a kind of Proprietary right over him" ଉଭୟଙ୍କ ଭିତରେ ଉଭୟ ଦୈହିକ ଓ ଆତ୍ମିକ ସଂପର୍କର ଗଭୀରତା ପରିଲକ୍ଷିତ ହୋଇଛି। ଭିକ୍ଟୋରିଆ ତାଙ୍କ ଡାଏରୀରେ ଠାଏ ଲେଖିଛନ୍ତି, "He touched my breast like plucking a flower" ଜୀବନର ଅନ୍ତିମକ୍ଷଣ ଯାଏ ଭିକ୍ଟୋରିଆଙ୍କ ସ୍ମୃତି ଉଚ୍ଚାଟିତ କରିଛି କବିଙ୍କୁ। ତାଙ୍କ ତିରୋଧାନ ବର୍ଷ ୧୯୪୧ରେ ସେ ଲେଖିଛନ୍ତି How I wish I could once again find my way to that foreign land where waits for me the message of love...... her language I knew not, but what her eyes said will foreover remain eloquent in its anguish. X X X I believe that your love may help me in my fulfilment.

ସେହିପରି ଲେଡି ରାନୁ ମୁଖାର୍ଜୀଙ୍କ ସହ କବି ଗୁରୁଙ୍କ ସଂପର୍କକୁ ନେଇ ଆଲୋଚକମାନେ ସବୁବେଳେ ବ୍ୟଗ୍ର। ଯଦିଓ ଇନ୍ଦିରା ଓ ଲେଡି ରାନୁ ମୁଖାର୍ଜୀଙ୍କ ବିଷୟରେ କବିଗୁରୁ ସ୍ୱୟଂ ନୀରବ, କିନ୍ତୁ ଉଭୟଙ୍କ ପାଖକୁ ସେ ଲେଖିଥିବା ଚିଠି ଓ ସେମାନଙ୍କ ଡାଏରୀରେ ରହିଥିବା କେତୋଟି ବାକ୍ୟ, ରବୀନ୍ଦ୍ରନାଥ ଓ ସେମାନଙ୍କ ସଂପର୍କରେ କୁହେଳି ସୃଷ୍ଟି କରିଥାଏ। ୧୨ ବୟସ୍କା ଅପୂର୍ବ ସୁନ୍ଦରୀ ରାନୁଙ୍କ କୈଶୋରୀୟ ସୌନ୍ଦର୍ଯ୍ୟରେ ମୋହିତ ହୋଇଥିଲେ ରବୀନ୍ଦ୍ରନାଥ। ଶାନ୍ତି ନିକେତନକୁ ଆସିଥିବା ଏହି ଦ୍ୱାଦଶବର୍ଷିଆ କିଶୋରୀର ସୌନ୍ଦର୍ଯ୍ୟରେ ବିମୋହିତ ରବୀନ୍ଦ୍ରନାଥ ରାନୁଙ୍କୁ ନେଇ କେତୋଟି ସୁନ୍ଦର କବିତା ଲେଖିଛନ୍ତି। ପ୍ରାୟ ସଭିଏଁ ଜାଣନ୍ତି ଯେ ରବୀନ୍ଦ୍ର ନାଥ ରାନୁଙ୍କୁ ନେଇ ଗୀତ ଲେଖିଛନ୍ତି ଏବଂ ସେ ସବୁ ନିଜେ ଗାଇଛନ୍ତି ମଧ୍ୟ। ରାନୁଙ୍କ ଉପସ୍ଥିତିରେ। ସେଥିପାଇଁ ରାନୁଙ୍କ ପତି ସାର୍ ବିରେନ୍ ମୁଖାର୍ଜୀ ରବୀନ୍ଦ୍ରନାଥଙ୍କୁ ନାପସନ୍ଦ କରୁଥିଲେ। ୭, ଫେବୃୟାରୀ, ୧୯୩୩ରେ ରାନୁ ମୁଖାର୍ଜୀ ଲେଖିଛନ୍ତି; At about 8.30, dinner had been served and we all set in the drawing room for a while. I was suppose to go to (Ravindranath) again but I dared not...... What he wants from me, I can't give to him. I can't...

## ସୁନିଲ ଗାଙ୍ଗୁଲିଙ୍କର 'ପ୍ରଥମ ଆଲୋ'ର କିୟଦଂଶ

କାଦମ୍ବରୀ ଥିଲେ ରବିଠାରୁ ମାତ୍ର ଅଠରମାସ ବଡ। ଏଯାଏଁ ତାଙ୍କର ପିଲାଛୁଆ ହୋଇନଥିଲେ। ତେଣୁ ସେ ଲାଗୁଥିଲେ ଅନୂଢା କୁମାରୀଟିଏ ପରି। ତାଙ୍କ ଆତ୍ମାକୁ ଜୀବନର ଜଟିଳତା ଛୁଇଁନଥିଲା ଯେମିତି। ପ୍ରେମ ଓ ସୁନ୍ଦରତା ପ୍ରତି ତାଙ୍କର ବିହ୍ୱଳଦୃଷ୍ଟି, ତାଙ୍କୁ ଦିଅର ରବିଙ୍କର ନିକଟବର୍ତ୍ତୀ କରିଥିଲା। ଲାଜକୁଳା ରବିଙ୍କ ପାଖେ ପାଖେ ରହି ସେ ତାଙ୍କୁ ଲାଳନ କରିଥିଲେ ଖୁବ୍ ନିଜର କରି। ରବି ନିଜକୁ ଖୋଲି ଦେଇଥିଲେ ପୁରାପୁରି କାଦମ୍ବରୀଙ୍କ ପାଖରେ।

x x x

କାଦମ୍ବରୀ ତାଙ୍କ ଆଡକୁ ଚାହିଁଲେ। କିଛି କହିଲେ ନାହିଁ। ରବିଙ୍କ ଛାତିରେ ବୁଡିଯାଇଥିବା ଲୋକର ଅନୁଭବ। ସେ ଆଶା କରୁଥିଲେ କାଦମ୍ବରୀ ତାଙ୍କୁ ବ୍ୟଗ୍ରତାର ସହ ଚାହିଁବେ। ତାଙ୍କୁ ହଜାର ପ୍ରଶ୍ନ ପଚାରିବେ। ସେ ଆଣିଥିବା ମାନପତ୍ର ପଢିବେ। ପାଇଥିବା ଉପହାରମାନଙ୍କୁ ଦେଖିବେ, ହସିବେ, ଥଟ୍ଟା କରିବେ। ସେମିତି କିଛି ହେଲା ନାହିଁ।

ତ୍ରିପୁରା ମହାରାଜା "ଭଗ୍ନ ହୃଦୟ' ପଢିଲେ। ସେ ମୋ କବିତାକୁ ପସନ୍ଦ କଲେ। ସେ ତାଙ୍କର ଦୁଇଜଣ କର୍ମଚାରୀ ହାତରେ ମୋତେ ମାନପତ୍ର ଓ କିଛି ଉପହାର ପଠେଇଛନ୍ତି। ତମେ ଖୁସି ନା !।

ମୁଁ ଖୁସି ହେବିନି କାହିଁକି ? ଉଦାସୀନ ଭାବରେ କହିଲେ କାଦମ୍ବରି। ସମସ୍ତେ ଜାଣନ୍ତି, ତମେ ତମ ସଫଳତାରେ ଭାରି ଖୁସି। ରବିଙ୍କ ମୁହଁରେ କଳାବାଦଲର ଛାଇ। 'ଭଗ୍ନ ହୃଦୟ' ଯେ ତୁମର। ସେଥିଲାଗି ମାନପତ୍ରର ହକ୍‌ଦାର ବି ତମେ। ଖୋସାମତ କଲା ପରି ରବି କହିଲେ।

ବାଜେ କଥା।

ତମେ ଉପହାର ସବୁ ଦେଖିବନି ?

ଦେଖିବି ପରେ। କାଦମ୍ବରୀ ଉଠି ଚାଲି ଯାଇଥିଲେ ଘର ଆଡକୁ।

ତାଙ୍କ ପଛେ ପଛେ ରବି। ମୋର କ'ଣ କିଛି ଭୁଲ ହୋଇଛି ?

ନା, ଦୀର୍ଘଶ୍ୱାସ ପକେଇ କହିଲେ କାଦମ୍ବରୀ। କା'ର କିଛି ଭୁଲ୍ ହୋଇନି।

ତମେ ମୋତେ ତ୍ରିପୁରା ପଠେଇଲ କାହିଁକି ?

ତମେ ଯିବ। ତମ କବିତା ଆହୁରି ସୁନ୍ଦର ହେବ। ତମର ଖ୍ୟାତି ବ୍ୟାପିଯିବ ପୃଥିବୀ ସାରା। ପୃଥିବୀର ଲୋକେ କହିବେ ତମେ ତାଙ୍କର। ମୁଁ ତମକୁ ନିଜର କରି ରଖିପାରିବି କେମିତି ? ରଖିବି ବା କାହିଁକି ?

ନା, ମୁଁ ତୁମକୁ କେବେ ହେଲେ ଛାଡିବି ନାହିଁ।

ନା, ରବି, ମୁଁ ତମର କେହି ନୁହେଁ। କିଛି ବି ନୁହେଁ। ତମ କବିତା ପଢିବାକୁ କେତେ ଲୋକ ଆସିବେ।

ନା, ସେମିତି କୁହ ନାହିଁ। ତମଠୁ ଅଲଗା ରହି ମୁଁ ବଞ୍ଚିପାରିବି ନାହିଁ। ତମେ ମୋର ସବୁକିଛି।

ସେଥିଲାଗି ତ ଗଲାବର୍ଷରୁ ଭାବୁଛି। ଯା'ବି ଲେଖୁଛି ସବୁ ତମର। 'ଭଗ୍ନ ହୃଦୟ'ତ ତୁମର କବିତା।

କାଦମ୍ବରୀ ନିଜ ବାହୁରେ ମଥା ପୋତି କିଛି ସମୟ ଠିଆ ହେଲେ। ତା'ପରେ ସାଙ୍ଗେ ସାଙ୍ଗେ ବଦଳିଗଲା ତାଙ୍କ ସ୍ୱର ଓ ବ୍ୟବହାର। ଆରେ ହଁ, ମୋତେ କଥାଟିଏ କହିବ ! ବହିଟିକୁ ତମେ 'ଶ୍ରୀମତୀ ହେ'ଙ୍କୁ ଉତ୍ସର୍ଗ କରିଛ କାହିଁକି ?

ସେଇଟା ତମ ପାଇଁ !

ତମେ ସେମିତି କରିବାର ନଥିଲା।

ଅସଲ କଥା କେହି ଜାଣି ପାରିବେ ନାହିଁ। ତମେ ହେମାଙ୍ଗିନୀ। ତମେ ହେକାତେ।

ଆମ ଦୁହିଁଙ୍କ ଛଡା ଏକଥା କେହି ଜାଣି ପାରିବେ ନାହିଁ।

ସେଇଟା ତମେ ଭାବୁଛ। 'ଅଲିକ୍ ବାବୁ' ନାଟକରେ ତମେ ଅଲିକ୍। ମୁଁ ହେମାଙ୍ଗିନୀ। ଅନେକ ଲୋକ ସେ ନାଟକ ଦେଖିଛନ୍ତି। ତା'ଛଡା ସଭିଏଁ ଜାଣନ୍ତି ଯେ, ତମେ ମୋତେ ହେକାତେ ବୋଲି ଡାକ।

ଲୋକେ ଯାହା ଭାବୁଛନ୍ତି, ଭାବନ୍ତୁ। ମୁଁ ମୋର ଖୁସି ଲେଖିବି।

ଖୁସିରେ ଭରା ଭରା ରବିର ସ୍ୱର।



# ଓଡ଼ିଆ ଭାଷାର ପରମ ହିତୈଷି ବନ୍ଧୁ : ଜନ୍ ବିମ୍ସ୍

୧୮୭୭ ମସିହା ଜୁନ୍ ୧୬ ତାରିଖ ଦିନ ବାଲେଶ୍ୱରରେ ଆୟୋଜିତ ଏକ ସମ୍ବର୍ଦ୍ଧନା ସଭାରେ ତଦାନୀନ୍ତନ ଓଡ଼ିଆ କମିଶନର ଜନ୍ ବିମ୍ସ ହିନ୍ଦୀରେ ବକ୍ତୃତା ଦେଇ କହିଥିଲେ- "ବାଲେଶ୍ୱର ଆମ୍ଭକୁ ମନରେ ରଖୁ ଅବା ନରଖୁ ଆମ୍ଭେ ବାଲେଶ୍ୱରକୁ କଦାପି ପାଶୋରିବୁ ନାହୁଁ। ଆମ୍ଭର ଏହି ବାସନା ଯେ ଆମ୍ଭ ହୃଦୟରେ ବାଲେଶ୍ୱର ଏବଂ ବାଲେଶ୍ୱର ହୃଦୟରେ ଆମ୍ଭେ ଚିରକାଳ ଥାଉ"। ଜଣେ ଉପନିବେଶୀ ପ୍ରଶାସକଙ୍କର ଏହି ଭାବପ୍ରବଣ ଉକ୍ତି, ଆମ ମନରେ ରହିଥିବା ଐତିହାସିକ ଇଂରେଜ ବିଦ୍ୱେଷୀ ଧାରଣାକୁ ଦୋହଲାଇ ଦିଏ। ଜନ୍ ବିମ୍ସ ବାଲେଶ୍ୱର ଏବଂ କଟକର କଲେକ୍ଟର ଏବଂ କଟକ କମିଶନର ଭାବରେ ଓଡ଼ିଶାବାସୀଙ୍କର ପ୍ରିୟଭାଜନ ହୋଇପାରିଥିଲେ। ୧୮୬୯ ମସିହାରେ ବିମ୍ସ ବାଲେଶ୍ୱରରେ କଲେକ୍ଟର ଭାବରେ ଯୋଗଦାନ କରିବା ପୂର୍ବରୁ ଜଣେ ଭାଷାତତ୍ତ୍ୱବିତ୍ ଏବଂ ସାହିତ୍ୟ ସମୀକ୍ଷକ ଭାବରେ ବିଖ୍ୟାତ ହୋଇସାରିଥିଲେ। ଭାରତୀୟ ଭାଷା ସମୁହ ବିଷୟରେ ତାଙ୍କର ଗବେଷଣା ଜାରି ରହିଥିଲା।

୧୮୬୬ର କୁଖ୍ୟାତ ନ'ଅଙ୍କ ଦୁର୍ଭିକ୍ଷର କରାଳ ଛାଇ ସେ ପର୍ଯ୍ୟନ୍ତ ଓଡ଼ିଶାରୁ ଲିଭିନଥାଏ। ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ପୁରାପୁରି ବିପର୍ଯ୍ୟସ୍ତ ହୋଇ ପଡିଥିବା ବେଳେ ଓଡ଼ିଆ ଜାତିର ଅସ୍ତିତ୍ୱ ଉପରେ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ ହୋଇଥାଏ। ବଙ୍ଗାଳୀ ଜମିଦାର ଓ ବୁଦ୍ଧିଜୀବିମାନେ ହଠାତ୍ ଓଡ଼ିଆ ଭାଷା-ସଂସ୍କୃତିକୁ ବଙ୍ଗଳାର ଏକ ଉପବିଭାଗ ବୋଲି ଗ୍ରହଣ କରି ନେଇଥାନ୍ତି। ଏକ ଦରିଦ୍ର ଜାତିର ବୌଦ୍ଧିକ ଅସ୍ମିତାକୁ ସୁରକ୍ଷିତ ରଖିବା ପାଇଁ ଓଡ଼ିଆ ନବଜାଗରଣର ଉନ୍ମେଷ ଘଟିଥାଏ। ଏହି ନବଜାଗରଣର ପ୍ରେରଣା ପଛରେ ଇଂରାଜୀ ସାହେବ ଜନ୍ ବିମ୍ସଙ୍କର ବିଶେଷ ଭୂମିକା ରହିଥିଲା। ଓଡ଼ିଶାର ଇତିହାସ ଓ ଓଡ଼ିଆ ଭାଷାର ଐତିହ୍ୟକୁ ଏକ ନୂତନ ଆଲୋକରେ ଉଦ୍‌ଭାସିତ କରିବା ପାଇଁ ବିମ୍ସ ପ୍ରଚୁର ପରିଶ୍ରମ କରିଥିଲେ। ଡବ୍ଲ୍ୟୁ.ଏଚ୍.ହଣ୍ଟରଙ୍କର ଓଡ଼ିଶା ଇତିହାସ ରଚନା ପଛରେ ବିମ୍ସଙ୍କର ଯଥେଷ୍ଟ

ଅବଦାନ  ରହିଛି। ଯଦିଓ ହଣ୍ଟରଙ୍କର ସହ ପରବର୍ତ୍ତୀ ପର୍ଯ୍ୟାୟରେ ବିମ୍‌ସଙ୍କର ମତଭେଦ ଘଟିଥିଲା ବିଭିନ୍ନ ତଥ୍ୟକୁନେଇ।

ବିମ୍‌ସଙ୍କର ଓଡ଼ିଶା ସଂପର୍କୀତ ରଚନାବଳୀକୁ ସଂକଳିତ କରି ପ୍ରଫୁଲ୍ଲ ପାଠାଗାର ତରଫରୁ ପ୍ରକାଶ ପାଇଛି ଜନ୍ ବିମ୍‌ସ: ଏସେଜ୍ ଅନ୍ ଓରିଶାନ୍ ହିଷ୍ଟୋରି ଏଣ୍ଡ ଲିଟରେଚର୍ ପୁସ୍ତକ। ଡକ୍ଟର କୈଳାସ ପଟ୍ଟନାୟକଙ୍କ ଦ୍ୱାରା ସଂପାଦିତ ଏହି ପୁସ୍ତକରେ ବିମ୍‌ସ୍‌ଙ୍କର ଓଡ଼ିଶା ସଂପର୍କୀତ ସମସ୍ତ ରଚନାବଳୀ ସଂକଳିତ ହୋଇଛି। ଐତିହାସିକ ଏବଂ ଭାଷା ତାତ୍ତ୍ୱିକ ଦୃଷ୍ଟିରୁ ବହୁ ତଥ୍ୟ ଇତି ମଧ୍ୟରେ ବଦଳି ସାରିଥିଲେ ହେଁ ଏକ ସଂକଟଜନକ ପରିସ୍ଥିତିରେ ବିମ୍‌ସ୍‌ଙ୍କର ଓଡ଼ିଆ ଜାତି ପାଇଁ ଅବଦାନ ଚିରସ୍ମରଣୀୟ ହୋଇ ରହିବ। ଜଣେ ଉପନିବେଶୀ ପ୍ରଶାସକଙ୍କର ନେଟିଭ୍‌ମାନଙ୍କ ପ୍ରତି ଅହେତୁକ ଅନୁରାଗ ପଛରେ କି କାରଣ ଥାଇପାରେ ?

ଓଡ଼ିଶାର ବୌଦ୍ଧ ସ୍ଥାପତ୍ୟଠାରୁ ଆରମ୍ଭ କରି ଲୋକଗୀତ ପର୍ଯ୍ୟନ୍ତ ବିବିଧ ବିଷୟ ପ୍ରତି ବିମ୍‌ସଙ୍କର ଆଗ୍ରହ ପ୍ରକାଶ କରିଛନ୍ତି ଓ ସେ ସଂପର୍କରେ ଆଲୋଚନା କରିଛନ୍ତି। ଭାଷା ସଂପର୍କରେ ତାଙ୍କର ଚାରୋଟି ଯାକ ପ୍ରବନ୍ଧ ସେହି ସମୟରେ ଓଡ଼ିଆ ଭାଷା ପାଇଁ ଅମ୍ଳଜାନ ସଦୃଶ ଥିଲା। ବଙ୍ଗାଳୀ ରାଜେନ୍ଦ୍ରଲାଲ୍ ମିତ୍ର ଏବଂ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କୁ ପ୍ରଚୁର ସମାଲୋଚନା କରିଛନ୍ତି ବିମ୍‌ସ। 'ଓଡ଼ିଆ ଏକ୍‌ଟା ସ୍ୱତନ୍ତ ଭାଷା ନଏ୩ ବୋଲି କହୁଥିବା କାନ୍ତିଚନ୍ଦ୍ରଙ୍କୁ ସମାଲୋଚନା କରି ବିମ୍‌ସ ଲେଖିଛନ୍ତି- This little work, though profoundly destitute of philogical arguments, has created some stir among the natives on the province, who are somewhat disgusted at finding their native language treated as a mere corruption of Bengale. ଅନେକ ସମୟରେ ଓଡ଼ିଆ ଭାଷାର ସ୍ୱତନ୍ତତା ଓ ସମୃଦ୍ଧି ବିଷୟରେ ଯୁକ୍ତି କଲାବେଳେ ବିମ୍‌ସ ମନେ ହୁଅନ୍ତି ସେ ଜଣେ ସାହେବର କାୟା ଥିବା ଓଡ଼ିଆ ଲୋକ। ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ ପ୍ରସଙ୍ଗରେ ତାଙ୍କର ମତାମତ ଆଜି ପର୍ଯ୍ୟନ୍ତ ପ୍ରାସଙ୍ଗିକ। ଇଂରାଜୀ ସାହିତ୍ୟର ଜଣେ ବିଦଗ୍ଧ ଆଲୋଚକ ଭାବରେ ବିମ୍‌ସ ଜାଣିଥିଲେ ଯେ, ଦେଶୀୟ ସାହିତ୍ୟରେ ପୁନରୁକ୍ତି, ପୁନରାବୃତ୍ତି ଏବଂ ବର୍ଣ୍ଣନାର ବାହୁଲ୍ୟ ବେଶୀ। ତଥାପି ରସକଲ୍ଲୋଳର କାବ୍ୟିକ ଚାତୁରୀ ଏବଂ ରସବୋଧ ଉପରେ ତାଙ୍କର ମତାମତ ପ୍ରଣିଧାନଯୋଗ୍ୟ। ରସକଲ୍ଲୋଳର ଅସଂଖ୍ୟ ପଦାବଳୀ ସେ ଉପସ୍ଥାପନ କରିଛନ୍ତି। କୌଶିକ ରାଗର ଗୁଣ ଲକ୍ଷଣ, ବ୍ୟବହୃତ ଅଳଙ୍କାର ଏବଂ ରସବୋଧ ବିଷୟରେ ତାଙ୍କର ବିଶ୍ଳେଷଣାତ୍ମକ ମନ୍ତବ୍ୟ ପଢିଲେ ଆଜିବି ଆଶ୍ଚର୍ଯ୍ୟ ହେବାକୁ ହୁଏ।

ଜଣେ ବିଦେଶୀ ଗବେଷକଙ୍କର ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ରହିଥିବା ଆକର୍ଷଣ ଆମକୁ ଚକିତ କରିଦିଏ ।

ଫୋକ୍‌ଲୋର ଅଫ୍ ଓଡ଼ିଶା ପ୍ରସଂଗରେ ବିମ୍‌ସ ଓଡ଼ିଶାର ସମୃଦ୍ଧ ଲୋକ ସାହିତ୍ୟ ବିଷୟରେ ଯଥେଷ୍ଟ ଆଲୋଚନା କରିନାହାନ୍ତି । ଅବଶ୍ୟ ଓଡ଼ିଶୀ ଲୋକଗୀତର ପରଂପରା ଖୁବ୍ ବ୍ୟାପକ । ତେବେ ତନ୍ତ୍ର ଏବଂ ଲୋକାଚାରକୁ ନେଇ କେତୋଟି ଛୋଟ ଛୋଟ ଲୋକଗାଥା ସେ ସଂଗ୍ରହ କରିଛନ୍ତି ଓ ତାର ବିଶ୍ଳେଷଣ କରିଛନ୍ତି । ଗୋଟିଏ ମନ୍ତ୍ର ଏଠାରେ ଉଦ୍ଧୃତ କରିଯାଇପାରେ -

ବଜ୍ର କିଳଣୀ ବଜ୍ର ଦ୍ୱାର
ଚଉ କୁଳି ଚାରି ଦ୍ୱାର
ଡାହାଣେ ଡାହାଣ ଚଣ୍ଡୀ ବାମେ କ୍ଷେତ୍ରପାଳ
ଆଗେ ନରସିଂହ ପଛେ ଅଷ୍ଟ ବେତାଳ
ମୋ ଅଙ୍ଗେ ପଡିଲା ମହାମୁଦ୍ରା ବଜ୍ରକପାଟ
କୋଟି ଆଇଲେ ଗୋଟି ବି ନ ଛାଡିବୁ
କାହାର ଆଜ୍ଞା !
କାଉଁରୀ କାମାକ୍ଷୀର କୋଟି କୋଟି ଆଜ୍ଞା ।

ଗୁହ୍ୟବିଦ୍ୟା ଭାବରେ ପରିଚିତ ଏହି ସବୁ ତାନ୍ତ୍ରିକ ମନ୍ତ୍ର ସଂଗ୍ରହ କରିବା ପାଇଁ ବିମ୍‌ସଙ୍କୁ ଯେ କେତେ କଠିନ ପରିଶ୍ରମ କରିବାକୁ ପଡିଥିବ, ତାହା ଆଜି ଆମ ଚିନ୍ତା ବାହାରେ । ଆଜି ମଧ୍ୟ ଆମେ ଆମର ପରଂପରାର ବହୁ ଆୟାମ ବିଷୟରେ ସଚେତନ ନୋହୁ । ହଜାର ହଜାର ପୋଥି ଆମେ ନଷ୍ଟ କରିସାରିଛୁ । ସେଗୁଡିକର ସଂରକ୍ଷଣ ଏବଂ ପ୍ରକାଶନ ପାଇଁ ଆମର ଇଚ୍ଛା ବା ଆଗ୍ରହ ନାହିଁ । ବିମ୍‌ସ୍‌ଙ୍କର ଏହି ଲେଖା ପଢିସାରିଲା ପରେ ଅନେକ ସମୟରେ ଲାଗିବ ଆମ ନିଜ ରାଜ୍ୟ ବିଷୟରେ ଆମେ କେତେ କମ୍ ଜାଣିଛୁ ।

ବିମ୍‌ସଙ୍କର ଓଡ଼ିଶାରେ ରହଣୀକାଳ ଦଶବର୍ଷରୁ ଅଧିକ ହେବ ନାହିଁ । କଟକ ଏବଂ ବାଲେଶ୍ୱରର କଲେକ୍ଟର ଏବଂ କଟକ କମିଶନର ପରି ଗୁରୁତ୍ୱପୂର୍ଣ୍ଣ ପଦବୀରେ କାମ କରିବା ସତ୍ତ୍ୱେ ଭାଷା ଏବଂ ଇତିହାସ ପାଇଁ ତାଙ୍କ ପାଖରେ ସମୟରେ ଅଭାବ ନଥିଲା । ଭାରତୀୟ ଭାଷାର ଜଣେ ପ୍ରଖ୍ୟାତ ବିଦ୍ୱାନ ଭାବରେ ପୂର୍ବ ଭାରତୀୟ ଭାଷା ସମୂହ ପାଇଁ ତାଙ୍କର ଅବଦାନ ଥିଲା ଯଥେଷ୍ଟ । ତାଙ୍କର ବହୁଚର୍ଚ୍ଚିତ ଗ୍ରନ୍ଥ 'କମ୍ପାରେଟିଭ୍ ଗ୍ରାମାର ଅଫ୍ ଦ ଆରିୟାନ ଲାଙ୍ଗୁଏଜେସ୍ ଅଫ୍ ଇଣ୍ଡିଆ' ପ୍ରକାଶିତ ହୁଏ ୧୮୬୬ରେ । ବିସପ୍

କାଲ୍‌ଡୱେଲଙ୍କ 'କମ୍ପାରେଟିଭ୍ ଗ୍ରାମାର୍ ଅଫ୍ ଦ ଦ୍ରାବିଡିଏନ୍ ଲାଙ୍ଗୁଏଜେସ୍' ପରେ ଆର୍ଯ୍ୟ ଭାଷାଭାଷୀଙ୍କ ପାଇଁ ଏହା ଥିଲା ବିମ୍‌ସ୍‌ଙ୍କ ସବୁଠୁ ବଡ ଅବଦାନ। ହିନ୍ଦୀ, ବଙ୍ଗଳା, ଓଡ଼ିଆ, ମରାଠୀ ଇତ୍ୟାଦି ଭାଷାର ବ୍ୟକରଣକୁ ବିଶ୍ଳେଷଣ କରି ତଥ୍ୟଭିତ୍ତିକ ଏବଂ ବିଶ୍ଳେଷଣାତ୍ମକ ନିବନ୍ଧ ପ୍ରସ୍ତୁତ କରିଥିଲେ ସେ। ତେବେ ବିମ୍‌ସଙ୍କର ଭାଷାତାତ୍ତ୍ୱିକ ବିଭବ ଏତେ ଅଧିକ ଯେ ସେ ବିଷୟରେ ଆଲୋଚନା କରିବା ପାଇଁ ଏହା ଉପଯୁକ୍ତ ସ୍ଥାନ ନୁହେଁ। କେବଳ ଓଡ଼ିଶା ସଂପର୍କରେ ତାଙ୍କ ଦ୍ୱାରା ରଚିତ ପ୍ରବନ୍ଧ, ନିବନ୍ଧ ଓ ଟୀକା ଟିପ୍ପଣୀ ବିଷୟରେ ହିଁ ଆମେ ସୀମିତ ରହିବା।

ଆଲୋଚିତ ପୁସ୍ତକରେ ଓଡ଼ିଶାର ବିଭିନ୍ନ ସ୍ଥାନ ବିଷୟରେ ଅତ୍ୟନ୍ତ ଜୀବନ୍ତ ବର୍ଣ୍ଣନା କରିଛନ୍ତି ବିମ୍‌ସ୍। ବାଲେଶ୍ୱର, କଟକ ତଥା ବିଭିନ୍ନ ଗଡଜାତର ଜୀବନ୍ତ ବର୍ଣ୍ଣନା ଏଥିରେ ସନ୍ନିବେଷିତ ହୋଇଛି। ବାଲେଶ୍ୱର ପ୍ରତି ବିମ୍‌ସଙ୍କର ଆଗ୍ରହ ଥିଲା ପ୍ରଚୁର। ବାଲେଶ୍ୱରର ଅବସ୍ଥିତି, ପାଣିପାଗ, ଛୋଟିଆ ସହରଟିର ବିଭିନ୍ନ କାର୍ଯ୍ୟକଳାପ ବିଷୟରେ ବିମ୍‌ସ୍ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା କରିଛନ୍ତି। ଜୀବନ କେତେବେଳେ ଖୁବ୍ ଆନନ୍ଦଦାୟକ ଲାଗିଛି, ପୁଣି କେତେବେଳେ ଲାଗିଛି ଭୀଷଣ ନୀରସ। ମେଲେରିଆ ଆକ୍ରମଣରେ ଅନେକ ସମୟରେ ତାଙ୍କ ପତ୍ନୀ ଓ ଛୁଆ ପ୍ରଚୁର କଷ୍ଟ ପାଆନ୍ତି। ଜଣେ କର୍ତ୍ତବ୍ୟନିଷ୍ଠ ପ୍ରଶାସକ ଅପେକ୍ଷା ଜଣେ ପ୍ରଜ୍ଞାଦୀପ୍ତ ବୁଦ୍ଧିଜୀବି ଭାବରେ ଓଡ଼ିଶାର ଐତିହ୍ୟ ଓ ଇତିହାସକୁ ସେ ଭଲ ପାଇଛନ୍ତି। ଯେତେବେଳେ ଇଂରେଜ ଶାସକମାନେ ଭାରତକୁ ଆସୁଥିଲେ ଏକ ଭିନ୍ନ ମାନସିକତା ନେଇ, ସେତେବେଳେ ତାଙ୍କ ଭିତରୁ କେତେଜଣ ସମ୍ବେଦନଶୀଳ ବୁଦ୍ଧିଜୀବି ଥିଲେ ଯେଉଁମାନେ ଭାରତୀୟ ଭାଷା, ସାହିତ୍ୟ, ସଂସ୍କୃତି ଓ ପରଂପରା ପାଇଁ ଅନେକ କିଛି କରିଯାଇଛନ୍ତି। ସେହି କ୍ରମରେ ଜନ୍ ବିମ୍‌ସ୍‌ଙ୍କର ରଚନାବଳୀର ସଂକଳନ ଓ ସଂପାଦନ କରି ପ୍ରଫୁଲ୍ଲ ପାଠାଗାର ଏକ ଜାତୀୟ କାର୍ଯ୍ୟ କରିଛନ୍ତି। ଆନ୍ତର୍ଜାତିକ ମାନର ଚମତ୍କାର ମୁଦ୍ରଣ ଏବଂ ପରିପାଟୀ ପୁସ୍ତକଟିକୁ ଆକର୍ଷଣୀୟ ଓ ସଂଗ୍ରହଣୀୟ କରିଛି।

## ଜନ୍ ବିମ୍‌ସ୍ : ଜୀବନ କାହାଣୀ

ରେଭେରେଣ୍ଡ ଥୋମାସ୍ ବିମ୍‌ସ୍‌ଙ୍କର ପୁଅ ଜନ୍ ବିମ୍‌ସ୍ ୨୧ ଜୁନ୍ ୧୮୩୭ରେ ଲଣ୍ଡନରେ ଜନ୍ମ ଗ୍ରହଣ କରିଥିଲେ। ମର୍ଚ୍ଚେଣ୍ଟ ଟେଲର୍ ସ୍କୁଲ ଏବଂ ହେଲିବରି କଲେଜରେ ସେ ଶିକ୍ଷାଲାଭ କରିଥିଲେ। ସଂସ୍କୃତ ଏବଂ ପାର୍ସୀ ଭାଷାରେ ତାଙ୍କର ଦକ୍ଷତା ହେତୁ ସେ ପୁରସ୍କାର ଓ ମେଡାଲ ଲାଭ କରିଥିଲେ। ୧୮୫୮ରେ ଭାରତୀୟ ସିଭିଲ୍ ସର୍ଭିସ୍‌ରେ ଯୋଗ ଦେବା ପାଇଁ ସେ ଭାରତରେ ପହଞ୍ଚିଥିଲେ। ୧୮୫୯ରୁ ୧୮୬୧ ପର୍ଯ୍ୟନ୍ତ

ପଞ୍ଜାବରେ ଏବଂ ପରେ ଡିସେମ୍ବର ୧୮୬୧ରୁ ବଙ୍ଗଳା ରେସିଡେନ୍ସିରେ ସେ ତାଙ୍କର ପ୍ରଶାସନିକ କାର୍ଯ୍ୟ ତୁଲାଇଥିଲେ। ଏହି ସମୟରେ କଟକ ଓ ବାଲେଶ୍ୱର କଲେକ୍ଟର ଏବଂ କଟକ କମିଶନର ଭାବେ କାର୍ଯ୍ୟ କରିଥିଲେ। ପଞ୍ଜାବୀ, ବଙ୍ଗାଳୀ, ଓଡ଼ିଆ, ହିନ୍ଦୀ, ଭୋଜପୁରୀ, ମରାଠୀ ଇତ୍ୟାଦି ଆର୍ଯ୍ୟ ଭାଷା ଗୋଷ୍ଠୀର ଭାଷା ଗୁଡିକ ସହ ତାଙ୍କ ପରିଚୟ ଅତି ନିବିଡ ଥିଲା। ତାଙ୍କର ପ୍ରଥମ ପ୍ରବନ୍ଧ ପ୍ରକାଶିତ ହୋଇଥିଲା ୧୮୬୬ ମସିହାରେ। 'ଆଉଟ୍ ଲାଇନ୍ସ ଅଫ୍ ଇଣ୍ଡିଆନ୍ ଫିଲୋଲୋଜି' ଥିଲା ତାଙ୍କର ଏକ ଛୋଟ କିନ୍ତୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପୁସ୍ତକ। ୧୮୬୮ରେ ନେପାଳର ମଗର ଭାଷା ଏବଂ ଚମ୍ପାରଣ ଅଞ୍ଚଳର ଭୋଜପୁରୀ ଭାଷା ଉପରେ ଦୁଇଟି ଚମତ୍କାର ନିବନ୍ଧ ସେ ରଚନା କରିଥିଲେ। ବେଙ୍ଗଲ ଏସିଆଟିକ୍ ସୋସାଇଟିର ଜଣେ ପ୍ରାଜ୍ଞ ସଦସ୍ୟ ଭାବରେ ସେ ବହୁ ଗୁରୁତ୍ୱପୂର୍ଣ୍ଣ ପ୍ରବନ୍ଧ ଏହାର ଜର୍ଣ୍ଣାଲ ପାଇଁ ପ୍ରସ୍ତୁତ କରିଥିଲେ। ୧୮୯୧ରେ ପ୍ରକାଶିତ ହୋଇଥିଲା ତାଙ୍କ ଦ୍ୱାରା ରଚିତ ବେଙ୍ଗଲୀ ଗ୍ରାମାର୍। ତାଙ୍କର ବିଶାଳ ଭାଷାକୃତି 'କମ୍ପାରେଟିଭ୍ ଗ୍ରାମାର ଅଫ୍ ଦ ଆରିୟାନ ଲାଙ୍ଗୁଏଜ୍ସ ଅଫ୍ ଇଣ୍ଡିଆ' ପ୍ରକାଶିତ ହୋଇଥିଲା ୧୮୭୨-୧୮୭୯ ମସିହା ମଧ୍ୟରେ। ବିମ୍ସ୍ ଥିଲେ ଓଡ଼ିଶାର ଜଣେ ପ୍ରଖ୍ୟାତ ବନ୍ଧୁ। ସେ ୨୪ ମଇ, ୧୯୦୨ରେ ମୃତ୍ୟୁବରଣ କରିଥିଲେ।



# ଜୀବନ ଓ ଦର୍ଶନର ସୁରମୟ କାବ୍ୟଶିଳ୍ପୀ
# ବିନ୍ଦା କରନ୍ଦିକର

କୌଣସି ଏକ ସଂଗୀତର ସଂଧ୍ୟା । ସେ ଦିନର ମୁଖ୍ୟ ଆକର୍ଷଣ ଥାଆନ୍ତି, ଭାରତବର୍ଷର ପ୍ରଖ୍ୟାତ ସୀତାର ବାଦକ ପଣ୍ଡିତ ରବିଶଙ୍କର । ସୀତାରରୁ ମୁକୁଳି ଆସୁଥାଏ ରାଗ ସଂଗୀତର ଅପୂର୍ବ ପ୍ରବାହ । ବିଦଗ୍ଧ ଶ୍ରୋତା ମଜ୍ଜି ଯାଉଥାଆନ୍ତି ସଂଗୀତର ଅମୃତ ଅନୁଭବରେ । ଶ୍ରୋତାଙ୍କ ଗହଣରେ ବସିଥାନ୍ତି ଜଣେ କବି । ରାଗ ସଂଗୀତର ସମ୍ମୋହନ ଭିତରେ ତାଙ୍କୁ ଅଥୟ କରୁଥାଏ ତାମ୍ବରରେ ରହିଥିବା ଏକ ମାଛର ଚିତ୍ର । ସେ ମାଛର ଚିତ୍ର ବିହ୍ୱଳ କରେ କବିଙ୍କୁ । ସଂଗୀତର ନଈରେ ସେ ମାଛ ସତେକି ପହଁରୁଥାଏ ଓ ନୂଆ ଏକ କଳ୍ପନାର ଦ୍ୱୀପ ସୃଜନ କରୁଥାଏ । ସେହି ମାଛକୁ ପ୍ରତୀକ ଭବରେ ଗ୍ରହଣ କରି ଏକ ଚମତ୍କାର କାଳଜୟୀ କବିତାର ସୃଷ୍ଟି ହୋଇଥିଲା ମରାଠୀ ସାହିତ୍ୟରେ । ରାଗ ସଂଗୀତକୁ ଆଧାରଭାବେ ଗ୍ରହଣ କରି ଆଧୁନିକ କବିତାର ଏକ କାଳଜୟୀ କବିତାର ସ୍ରଷ୍ଟା ବିନ୍ଦା କରନ୍ଦିକର । ରାଗ ସଂଗୀତକୁ ଆଧାର କରି 'ଧ୍ରୁପଦ' ନାମରେ ଏକ ଚମତ୍କାର କାବ୍ୟ ସଂକଳନର ସ୍ରଷ୍ଟା ସେ । ଜ୍ଞାନପୀଠ ପୁରସ୍କାର ବିନ୍ଦା କରନ୍ଦିକରଙ୍କୁ ପ୍ରଦାନ କରାଯିବାର ପ୍ରତିକ୍ରିୟାରେ ଜଣେ ପ୍ରଖ୍ୟାତ ହିନ୍ଦୀ ସାହିତ୍ୟିକ କହିଥିଲେ, 'ଜ୍ଞାନପୀଠ ବିନ୍ଦାଜୀ ପାଉନାହାନ୍ତି ବରଂ ଜ୍ଞାନପୀଠର ସୌଭାଗ୍ୟ ଯେ, ସେ ବିନ୍ଦାଜୀଙ୍କୁ ପାଉଛି ।'

ବିନ୍ଦା କରନ୍ଦିକରଙ୍କ ଜନ୍ମ ୨୩ ଅଗଷ୍ଟ ୧୯୧୮ ମସିହାରେ କୋଙ୍କଣର ଏକ ଛୋଟିଆ ଗାଁରେ । ମରାଠୀ ସାହିତ୍ୟକୁ ସବୁ ଦିଗରୁ ଶ୍ରୀମନ୍ତ କରିଥିବା ବିନ୍ଦାଜୀଙ୍କର ପୁସ୍ତକ ସଂଖ୍ୟା ସେତେ ବେଶୀ ନୁହେଁ । ୧୯୪୯ରେ ପ୍ରକାଶ ପାଏ ତାଙ୍କ ପ୍ରଥମ ସଂକଳନ 'ସ୍ୱେଦ ଗଙ୍ଗା' । ଆଜି ପର୍ଯ୍ୟନ୍ତ ତାଙ୍କରି କବିତା ସଂକଳନ ସଂଖ୍ୟା-୮, ପ୍ରବନ୍ଧ ସଂକଳନ ସଂଖ୍ୟା-୨, ଖଣ୍ଡିଏ ଆଲୋଚନା ପୁସ୍ତକ, ୪ଟି ଅନୁବାଦ ଏବଂ ୧୨ଟି ଶିଶୁ କବିତା

ସଂକଳନ। ୮୫ ବର୍ଷର ଜୀବନ କାଳ ଭିତରେ ଅହରହ ସୃଜନମଗ୍ନ ଏବଂ ବୌଦ୍ଧିକ ପରୀକ୍ଷା ନିରୀକ୍ଷାରେ ପ୍ରଚଣ୍ଡ ଆସ୍ଥା ରଖିଥିବା ବିନ୍ଦା କରନ୍ଦିକର ମରାଠୀ ସାହିତ୍ୟର ଏକ ଜୀବନ୍ତ କିମ୍ବଦନ୍ତୀ। ପ୍ରସିଦ୍ଧ ସାମ୍ବାଦିକା ଗୌରୀ ରାମନାରାୟଣ କହିଥିଲେ, 'ବିନ୍ଦା କରନ୍ଦିକର ହେଉଛନ୍ତି ଆମ ସମୟର ତରୁଣତମ ବୟସ୍କ ଲେଖକ।'

ମରାଠୀ କବିତାରେ ସର୍ବାଧିକ ପ୍ରୟୋଗ ଏବଂ ପରୀକ୍ଷା ବିନ୍ଦା କରନ୍ଦିକରଙ୍କର ସର୍ବଶ୍ରେଷ୍ଠ ଅବଦାନ। ସେ ବୋଧେ ଏକମାତ୍ର ଭାରତୀୟ କବି ଯିଏ କି ଗୋଟିଏ ସଂକଳନରୁ ଆଉ ଗୋଟିଏ ସଂକଳନକୁ ଗଲା ବେଳକୁ ପୂରାପୂରି ବଦଳି ସାରିଥାନ୍ତି। ୨୦୦୩ରେ ପ୍ରକାଶିତ ତାଙ୍କର ଶେଷ କବିତା ଗ୍ରନ୍ଥ 'ଅଷ୍ଟ ଦର୍ଶନେ' ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଦର୍ଶନର ଏକ ଅଦ୍‌ଭୁତ କାବ୍ୟିକ ଅଭିବ୍ୟକ୍ତି। ଦେକାର୍ତ, ବର୍ଗସାଁ, ଚାର୍ବାକ୍ ପ୍ରମୁଖ ଦାର୍ଶନିକଙ୍କ ଚିନ୍ତା ଓ ଚେତନାକୁ କାବ୍ୟରୂପ ଦେଇଛନ୍ତି ସେ। ବିନ୍ଦାଜୀଙ୍କ ଭାଷାରେ କବିତା ହେଉଛି ବିଶୁଦ୍ଧ ଆନନ୍ଦଦାୟିନୀ ଲୀଳା। ତେଣୁ ବୌଦ୍ଧିକତାର ବିଶୁଦ୍ଧ ଆନନ୍ଦ ତାଙ୍କ କବିତାର ଲକ୍ଷ୍ୟବିନ୍ଦୁ। ଭାରତୀୟ ରାଗ ସଂଗୀତ ହେଉ ବା ପାଶ୍ଚାତ୍ୟ ଦର୍ଶନର ଗଭୀର ନେତିବାଚକ ଅନୁଭ. ସବୁକିଛିକୁ କବିତାରେ ବ୍ୟକ୍ତ କରିଦେବା ବିନ୍ଦା କରନ୍ଦିକରଙ୍କର କାବ୍ୟ ଧର୍ମ। ପାଶ୍ଚାତ୍ୟ ଦର୍ଶନରେ ଇଂରାଜୀ ଚିନ୍ତା ଓ ଦର୍ଶନକୁ ସବୁଠୁ ନିମ୍ନସ୍ତରର ବୋଲି କହିବାରେ ସେ କୁଣ୍ଠାବୋଧ କରିନାହାନ୍ତି।

ବୌଦ୍ଧିକତା ଏବଂ ସାମାଜିକ ଅଙ୍ଗୀକାରବଦ୍ଧତା ଦୁଇଟି ଭିନ୍ନ ଦିଗ ନୁହଁନ୍ତି ବରଂ ସେମାନେ ପରସ୍ପରର ପରିପୂରକ ଓ ସହାୟକ ଏକଥା ବିନ୍ଦା କରନ୍ଦିକରଙ୍କ କବିତାରୁ ସ୍ପଷ୍ଟ ହୋଇଯାଏ। ଜୀବନର ପ୍ରଥମ ଭାଗରେ ସାମ୍ୟବାଦୀ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ ସେ ମାର୍କସ୍‌ଙ୍କୁ ପୃଥିବୀର ଶ୍ରେଷ୍ଠତମ ଦାର୍ଶନିକ ଭାବରେ ଆଖ୍ୟାୟିତ କରିଥିଲେ। ପରବର୍ତ୍ତୀ ସମୟରେ ବାମ ଓ ଦକ୍ଷିଣପନ୍ଥୀ ରାଜନୀତିର ମିଶ୍ର ପ୍ରଭାବ ତାଙ୍କ ଲେଖାରେ ପଡିଥିଲା। ଜଣେ ସଚେତନଶୀଳ ବୁଦ୍ଧିଜୀବି ଭାବରେ ଏକଦା ସେ କହିଥିଲେ, 'ମାତୃ ବିଭାଜନ ପ୍ରଥମ ପାପ, ସମାନ ନାଗରିକ ଆଚରଣ ସଂହିତା ନ ତିଆରିବା ଦ୍ୱିତୀୟ ପାପ, ମହାତ୍ମା ଗାନ୍ଧୀଙ୍କ ହତ୍ୟା ତୃତୀୟ ପାପ, ବହୁମତର ଚାପରେ ଧର୍ମ ଆଧାରିତ ଅନ୍ୟାୟ ଆଇନ୍‌କୁ ବରକରାର ରଖିବା ଚତୁର୍ଥ ପାପ ଏବଂ ବାବ୍‌ରି ମସ୍‌ଜିଦ୍ ଭାଙ୍ଗିବା ପଞ୍ଚମ ପାପ'।

କୁହାଯାଏ ବିନ୍ଦା କରନ୍ଦିକର ଶୈଳୀ ଓ ସୌନ୍ଦର୍ଯ୍ୟର କବି। ତାଙ୍କ ଶୈଳୀ ସବୁବେଳେ ପରିବର୍ତ୍ତନଶୀଳ ଏବଂ ନିତ୍ୟ ନବୀନ। ପ୍ରୟୋଗ ଓ ପରୀକ୍ଷା ମାଧ୍ୟମରେ କବିତାର ରୂପ ଧର୍ମକୁ ସିଏ ପ୍ରକୃତିର ପରିବର୍ତ୍ତନଶୀଳ ଧର୍ମ ସହ ତୁଳନା କରିଛନ୍ତି। ତାଙ୍କର କାବ୍ୟ ସଂକଳନ 'ସ୍ୱେଦ ଗଙ୍ଗା', 'ମୃଦ୍ ଗନ୍ଧା', 'ଜାତକ', 'ବିରୁପିକ', 'ଧ୍ରୃପଦ', 'ଅଷ୍ଟଦର୍ଶନେ' ଇତ୍ୟାଦିରେ ରୂପ ଓ ଭାବର ଅନ୍ତହୀନ ପରୀକ୍ଷା ନିରୀକ୍ଷା ଦେଖିବାକୁ ମିଳେ। ଗୋଟିଏ ନିର୍ଦ୍ଦିଷ୍ଟ ଶୈଳୀ ବା କାବ୍ୟ ଭାଷାକୁ ଜାବୁଡି ଧରି ସେ କଦାପି କବିତା ଲେଖିନାହାନ୍ତି। ପରଂପରାର ଛନ୍ଦ ଓ ଭାବ ବିନ୍ୟାସକୁ ଆଧୁନିକତାର ପରିପ୍ରେକ୍ଷୀରେ ପୁନଃବିନ୍ୟାସ କରିବା ତାଙ୍କ କବିତାର ମୌଳିକ ଗୁଣ। 'ଅଷ୍ଟଦର୍ଶନେ' ପାରମ୍ପରିକ ମରାଠୀ 'ଅଭଙ୍ଗ' ଶୈଳୀରେ ରଚିତ।

କବିତା ବ୍ୟତିରେକେ ପ୍ରବନ୍ଧ, ସମାଲୋଚନା, ଶିଶୁ ସାହିତ୍ୟ ଓ ଅନୁବାଦ କ୍ଷେତ୍ରରେ ମଧ୍ୟ ତାଙ୍କର ସିଦ୍ଧି ରହିଛି। ଉଭୟ ମରାଠୀ ଏବଂ ଇଂରାଜୀ ଭାଷାରେ ସେ ଜଣେ ଦକ୍ଷ ଆଲୋଚକ। ତାଙ୍କ ଆଲୋଚନା ଗ୍ରନ୍ଥ 'ଏ କ୍ରିଟିକ୍ ଅଫ୍ ଲିଟରାରୀ ଭେଲ୍ୟୁଜ୍', ମରାଠୀରେ 'ପରଂପରା ଅଣି ନାଓ୍ୱତ୍' ସମାଲୋଚନା ସାହିତ୍ୟରେ ଏକ ଏକ ମାଇଲ ଖୁଣ୍ଟ ସଦୃଶ। ତାଙ୍କ ପ୍ରବନ୍ଧ 'ସ୍ପର୍ଶିତ ପଲ୍ଲବୀ' ଏବଂ 'ଆକାଶର ଅର୍ଥ' ମରାଠୀ ସାହିତ୍ୟର ଅମୂଲ୍ୟ ଗ୍ରନ୍ଥ। ପ୍ରଖ୍ୟାତ ଇଂରାଜୀ କବି ଏ.କେ. ରାମନୁଜନ୍‌ଙ୍କ ସହ ମିଶି ସେ ତାଙ୍କର ଦୁଇଟି କବିତା ସଂକଳନ ଇଂରାଜୀରେ ପ୍ରକାଶ କରିଛନ୍ତି। 'ପଏମ୍‌ସ ଅଫ୍ ବିନ୍ଦା' କବିତା ସଂକଳନ ଦୁଇଟି ତାଙ୍କୁ ମରାଠୀ ସାହିତ୍ୟ ବାହାରେ ଲୋକପ୍ରିୟ କରାଇଛି। ଶିଶୁମାନଙ୍କ ପାଇଁ ସେ 'ରାନିଜି ବାଗ୍', 'ଅଜବ ଖାନା', 'ପରୀ ଗ ପରୀ' ଇତ୍ୟାଦି ପୁସ୍ତକ ରଚନା କରିଛନ୍ତି।

ଏକଦା ଜଣେ ସାମ୍ବାଦିକ ତାଙ୍କୁ ପଚାରିଥିଲେ, 'ତରୁଣ ପୀଢ଼ିର ଲେଖକମାନଙ୍କ ପାଇଁ ତାଙ୍କର ବାର୍ତ୍ତା କ'ଣ ?' ଉତ୍ତରରେ ବିନ୍ଦା କହିଥିଲେ, 'ମୁଁ କିଛି ବି କହିବାକୁ ଚାହୁଁନାହୁଁ। ତରୁଣ ପୀଢ଼ି ଯାହା ଚାହୁଁଛନ୍ତି ତାହା କରନ୍ତୁ। ସ୍ୱାଧୀନତାକୁ ପ୍ରଚୁର ଭଲ ପାଉଥିବା ବିନ୍ଦା କରନ୍ଦିକରଙ୍କ ଏକ ମୁକ୍ତ ମଣିଷ। କୌଣସି ବାଦ ବା ବନ୍ଧନ ତାଙ୍କୁ ବାନ୍ଧି ରଖିପାରି ନାହିଁ। ଜୀବନ ସଂଘର୍ଷ ପାଇଁ ମହାରାଷ୍ଟ୍ରର ଗାଁ ଗାଁ ସେ ବୁଲିଛନ୍ତି। ଚାକିରୀ ପାଇଁ ସଂଗ୍ରାମ କରିଛନ୍ତି। ଆର୍ଥିକ ଦୃଷ୍ଟିରୁ ଚାକିରୀ ପାଇଁ ସଂଗ୍ରାମ କରିଛନ୍ତି। ଆର୍ଥିକ ଦୃଷ୍ଟିରୁ କେବେ ବି ତାଙ୍କର ଖାସ୍ ସ୍ୱଚ୍ଛଳତା ନଥିଲା। ତଥାପି ମରାଠୀ କବିତାକୁ ଲୋକଙ୍କ

ପାଖରେ ପହଞ୍ଚାଇବା ପାଇଁ ସେ ଯାଯାବର ପରି ଘୂରିଛନ୍ତି। ତାଙ୍କର ସମକାଳୀନ ବସନ୍ତ ବାପଟ୍, ମଙ୍ଗେସ୍ ପଦ୍‌ଗାଓଁଙ୍କରଙ୍କ ସହ ବୁଲି ବୁଲି ହଜାର ହଜାର କବିତା ପାଠର ଆୟୋଜନ ସେ କରିଛନ୍ତି। ପୁରସ୍କାର ସ୍ୱରୂପ ପାଇଥିବା ୫ ଲକ୍ଷ ଟଙ୍କା ସେ ଦାନ କରିଦେଇଛନ୍ତି ବିଭିନ୍ନ ଅନୁଷ୍ଠାନକୁ। ସରଳତା ଏବଂ ବଦାନ୍ୟତା ବିନ୍ଦାଜୀଙ୍କର ଅନ୍ୟ ବିଶେଷ ଗୁଣ।

ମନୁଷ୍ୟର ଅପରାଜେୟ ଜୀଜିବିଷା, ଅଦମ୍ୟ ଆଶା ଓ ମାନବୀୟ ମୂଲ୍ୟବୋଧକୁ ନିଜ ରଚନାର କେନ୍ଦ୍ରବିନ୍ଦୁ ମନେ କରୁଥିବା ବିନ୍ଦା କରନ୍ଦିକରଙ୍କ ଲେଖାରେ ବିଶ୍ୱ ଦର୍ଶନର ଗଭୀରତା ଆମେ ଦେଖିଥାଉ। ଧର୍ମ ଏବଂ ପରଂପରା ଆଳରେ ସଂକୀର୍ଣ୍ଣତା ଉପରେ ପ୍ରଚଣ୍ଡ ପ୍ରହାର କରିଛନ୍ତି ସେ। ଏହି ଯଶସ୍ୱୀ ଲେଖକଙ୍କୁ ଜ୍ଞାନପୀଠ ପୁରସ୍କାର ପ୍ରଦାନ କରାଯାଇଥିବାରୁ ମରାଠୀ ସାହିତ୍ୟରେ ଏକ ପ୍ରକାର ଉତ୍ସବର ବାତାବରଣ ଖେଳିଯାଇଛି। ପୂର୍ବରୁ ‘ଯଯାତି’ର ଲେଖକ ଭି.ଏସ୍. ଖଣ୍ଡେକର ଏବଂ କୁସୁମାଗ୍ରଜ ମରାଠୀ ସାହିତ୍ୟକୁ ବିଶେଷ ଅବଦାନ ପାଇଁ ଜ୍ଞାନପୀଠ ପୁରସ୍କାର ପାଇଥିଲେ। ଅନେକ ବର୍ଷ ପରେ ପୁଣି ଥରେ ମରାଠୀ ସାହିତ୍ୟ ଜ୍ଞାନପୀଠ ପୁରସ୍କାର ପାଇବାର ସମ୍ମାନ ଲାଭ କରିଛି।



# ନୀରବତାର ଗଳିରେ ଦୀର୍ଘଶ୍ୱାସ ପରି ଏକ ପ୍ରେମ କାହାଣୀ   ଅମୃତା ପ୍ରୀତମଙ୍କ ଜୀବନ ଓ ସାହିତ୍ୟ

ନିଜ ଆତ୍ମଜୀବନୀ ଲେଖିବା ପୂର୍ବରୁ ଅମୃତା ପ୍ରୀତମ ଭାବିଥିଲେ ମାତ୍ର ଦଶଟି ପଙ୍‌କ୍ତିରେ ସେ ନିଜ ଜୀବନ କାହାଣୀ ସମାପ୍ତ କରିବେ। ତାଙ୍କ ନିଜ ଭାଷାରେ -

ମୋର ସମସ୍ତ ରଚନା କବିତା ହେଉ ବା କାହାଣୀ କିମ୍ବା ଉପନ୍ୟାସ, ସଭିଏଁ ଜଣେ ଜଣେ ଅବୈଧ ସନ୍ତାନ। ମୋ ଦୁନିଆଁର ବାସ୍ତବତା ମୋ ମନର ସ୍ୱପ୍ନକୁ ପ୍ରେମ କଲା ଓ ସେମାନଙ୍କର ଅବୈଧ ମିଳନରୁ ମୋର ସମସ୍ତ ରଚନାର ଜନ୍ମ। ଜାଣେ, ଗୋଟେ ଅବୈଧ ପିଲାର ଭାଗ୍ୟ କେତେ ଦୁର୍ବିସହ। ତମାମ୍ ଆୟୁଷ ମୋର ଲେଖାମାନ ସାହିତ୍ୟିକ ସମାଜରେ ଅପମାନ ଭୋଗିବେ।”

ନିଜ ରଚନା ସଂପର୍କରେ ଏତେ ସ୍ପଷ୍ଟ ମୂଲ୍ୟାୟନ ପୃଥିବୀର ଆଉ କେଉଁ ଲେଖକ କରିଥିବେ କି ନା ସନ୍ଦେହ। କିନ୍ତୁ ଅମୃତା ପ୍ରୀତମ୍‌ଙ୍କ କଥା ନିଆରା। ସତ୍ୟ ଓ ସ୍ୱପ୍ନର ମିଳନ ରେଖାରେ ତାଙ୍କର ଘର। ସବୁ ଅବୈଧ-ଅନୈତିକ, ତାଙ୍କ ପାଇଁ ବୈଧ ଓ ସୃଷ୍ଟିତତ୍ତ୍ୱର ନିୟାମକ। ଭିଡ ବାହାରେ ଠିଆ ହେବା ତାଙ୍କର ପିଲାଦିନର ଅଭ୍ୟାସ। ନିଜର ସ୍ୱପ୍ନ ଓ କଳ୍ପନାକୁ ଜାହିର କରିବା ପାଇଁ ଦୁନିଆର ସବୁ ଅତ୍ୟାଚାରକୁ ହସିହସି ସହିଯିବା, କ୍ଷମା କରିଦେବା ତାଙ୍କର ପ୍ରକୃତି। ସାହିତ୍ୟ ରଚନା ତାଙ୍କ ପାଇଁ ଇଡେନ୍ ଗାର୍ଡେନ୍‌ର ବର୍ଜିତ ଫଳ। ପ୍ରେମ ପାଇଁ ବର୍ଜିତ ଫଳକୁ ଚାଖିବାରେ ତାଙ୍କର ପ୍ରଚୁର ଆଗ୍ରହ। ସେଇ ଆଗ୍ରହରୁ ତାଙ୍କ ସୃଷ୍ଟିର ଆରମ୍ଭ। କବିତା ଲେଖୁ ଲେଖୁ କାହାଣୀ ଓ କାହାଣୀରୁ ଉପନ୍ୟାସ, ପୁନଶ୍ଚ ଉପନ୍ୟାସରୁ ସ୍ମୃତି ଲେଖ- ଜୀବନ କାହାଣୀ - ସାହିତ୍ୟର ପ୍ରାୟ ସମସ୍ତ ବିଭାଗରେ ତାଙ୍କର ମୁକ୍ତ ବିଚରଣ। କିନ୍ତୁ କବିତା, କେବଳ କବିତା, ତାଙ୍କର ପ୍ରତ୍ୟେକ ରଚନାର ଆଧାର। ସ୍ୱପ୍ନ ଓ ବାସ୍ତବତାର ଧୂଆଁ ଧୂଆଁ ଚିତ୍ର ପାଇଁ ଅମୃତା ସବୁବେଳେ ଏକ କାବ୍ୟ ଭାଷାର ଆଶ୍ରୟ ନେଇଛନ୍ତି। ତାଙ୍କର ରଚନା ସମ୍ଭାର ଏତେ ବିଶାଳ ଯେ, ସେ ସବୁର ସଂକ୍ଷିପ୍ତ ଆଲୋଚନା ପାଇଁ ବି ଶତାଧିକ ପୃଷ୍ଠାର ଆବଶ୍ୟକତା ରହିଛି। ତାଙ୍କର କେତୋଟି

ଗଦ୍ୟ ରଚନା ଉପରେ ସଂକ୍ଷିପ୍ତ ଆଲୋଚନା ତଥା ରଚନା ଭିତ୍ତିରେ ତାଙ୍କ ଜୀବନ ଓ ସାହିତ୍ୟର ପରିଚୟ ପ୍ରଦାନ ଏଇ ଆଲେଖ୍ୟର ଉଦ୍ଦେଶ୍ୟ।

## ଏକ ଅଲୋଡା ପ୍ରାର୍ଥନା ଓ ବାଟଭୁଲା ଷୋହଳ ଫଗୁଣ

ବୋଲେୟାରଙ୍କ କବିତାର କିୟଦଂଶ ଅନୁବାଦ କଲାବେଳେ ଅମୃତା ପ୍ରୀତମଙ୍କ ମନୋଦଶା କେମିତି ଥିଲା କିଏ ଜାଣେ ? ହେଲେ ବୋଦଲେୟାରଙ୍କ କାବ୍ୟ ନାୟିକାର ମୁହଁ ଅମୃତା ପ୍ରୀତମଙ୍କ ପରି ନୁହଁ ତ ! ଜୀବନର ଜଟିଳ ସଂଘର୍ଷ ଓ ସୌନ୍ଦର୍ଯ୍ୟର ଅନୁପମ ଐଶ୍ୱର୍ଯ୍ୟର କଲଟେଲ୍ ଅମୃତାଙ୍କ ଜୀବନ। ଏକ ଅଲୋଡା ପ୍ରାର୍ଥନାରୁ ତାଙ୍କର ଜନ୍ମ। ଗୁରୁଦ୍ୱାରରେ ନନ୍ଦ ସାଧୁଙ୍କର ଦୁଇ ଜଣ ଛାତ୍ରୀ ଦିନେ ପ୍ରାର୍ଥନା କରିଥିଲେ, 'ଭଗବାନ ! ଆମ ମାଷ୍ଟରଜୀଙ୍କ ଘରେ ଝିଅଟିଏ ଦିଅ।' ପ୍ରାର୍ଥନାରେ ବିରକ୍ତ ହୋଇଥିଲେ ନନ୍ଦ ସାଧୁ। ହେଲେ ଅଲୋଡା ପ୍ରାର୍ଥନାର ଫଳ ସ୍ୱରୂପ ନନ୍ଦ ସାଧୁ (କର୍‌ତାର ସିଂ) ଓ ରାଜ ବିବିଙ୍କ ଝିଅ ଭାବରେ ଜନ୍ମ ଗ୍ରହଣ କରିଥିଲେ ଅମୃତା ଅଖଣ୍ଡିତ ଭାରତବର୍ଷର ଗୁଜରାଁଓ୍ୱାଲାରେ। ୩୧, ଅଗଷ୍ଟ ୧୯୧୯ର ବର୍ଷା ଭିଜା ପୃଥିବୀରେ ପାଦ ଥାପିଥିଲେ ଅମୃତା। ସେତିକିବେଳେ ସ୍ୱର୍ଗର ଦେବତାମାନେ ନିଘୋଡ ନିଦରେ। ବୋଧେ ଦେବତାମାନେ ଶୋଇଥିବା ବେଳେ ହିଁ ଆତ୍ମାରେ ଅବତରଣ କରିଥାଏ ଦିବ୍ୟଶକ୍ତି।

ଅମୃତାଙ୍କ ପିଲାଦିନ ଭୀଷଣ ଭାବରେ ନିଃସଙ୍ଗ ଓ ସ୍ୱପ୍ନମୟ। ବାପା ଥିଲେ ବହି-କଲମର ମଣିଷ। ମା'ଙ୍କ ମୃତ୍ୟୁ ପରେ ଏକାକିନୀ ଝିଅଟିର ଦୁଃଖ ଭିତରେ ହାଲ୍‌କା ହାଲ୍‌କା ସ୍ୱପ୍ନର ମେଘମାଳା। ସେଇ ଏକାକିନୀ ସ୍ୱପ୍ନଖୋର ଅମୃତାଙ୍କ କଲମରୁ ପରବର୍ତ୍ତୀ ଦିନମାନଙ୍କରେ ଝରି ପଡିଛି ସ୍ୱପ୍ନ ଓ ନିଃସଙ୍ଗତାର ଆଞ୍ଜୁଳା ଆଞ୍ଜୁଳା ଅକ୍ଷର। ଯୌବନ ଆସିଛି ଅଜଣା ଅପରିଚିତ ପରି। ତମାମ୍ ଜୀବନ ଷୋହଳ ବୟସର ଯୌବନକୁ ଖୋଜିଛନ୍ତି ଅମୃତା ପାଗଳିନୀ ହୋଇ। ମରିବା ଯାଏ ଷୋହଳ ବୟସରେ ଲାଖି ରହିଗଲା ଅମୃତାଙ୍କ ପାଦ। ତାଙ୍କ କବିତାରେ ସେଇ ବାଟଭୁଲା ଷୋଡଶୀ ଫଗୁଣର ମାତାଲ ଛନ୍ଦ। ତାଙ୍କର ଉପନ୍ୟାସ, ଗଳ୍ପ ଓ ଆତ୍ମଜୀବନୀର ପ୍ରତ୍ୟେକ ଶବ୍ଦରେ ବାଟଭୁଲା ଯୌବନର ରୋମାଞ୍ଚ। ହତାଶା, ଉଦାସୀନତା, ଦୀର୍ଘଶ୍ୱାସ, ଲୁହ, ସ୍ମିତ ଓ ଅସୀମତାର ବ୍ୟାପ୍ତି। ୮୬ ବର୍ଷର ଜୀବନ ଭୋଗିଥିବା ଅମୃତା ଜୀବନ ତମାମ୍ ଖୋଜିଛନ୍ତି ଷୋହଳ ବୟସକୁ। ତାଙ୍କର ପ୍ରେମ, ଏକ ଚିରନ୍ତନ ଷୋଡଶୀର ପ୍ରେମ।

## ପ୍ରେମର କ୍ୟାକ୍ଟସ୍ ଓ ଅମୃତର ଫୁଲ :

ଅମୃତା ପ୍ରୀତମଙ୍କ ରଚନା ଅପେକ୍ଷା ତାଙ୍କ ଜୀବନକୁ ନେଇ ବେଶୀ ଆଲୋଚନା ହୋଇଥାଏ। ତାର କାରଣ ହେଉଛି ନିଜ ଚରିତ୍ର ମାଧ୍ୟମରେ ନିଃସଙ୍କୋଚରେ ସିଏ ନିଜକୁ ବ୍ୟକ୍ତ କରିଯାଇଛନ୍ତି। ଛଳନା ନାହିଁ, ପାପ ବୋଧ ନାହିଁ, ବୈଧ-ଅବୈଧକୁ ଖାତିର ନାହିଁ, ପ୍ରାଣକୁ ସ୍ପର୍ଶ କରୁଥିବା ଚିନ୍ତା ଓ କଳ୍ପନାର ଯାଦୁକରୀ କଲମଟିଏ ଥିଲା ତାଙ୍କ ହାତରେ। ତାଙ୍କ ନିଜ ପରି ତାଙ୍କ ଚରିତ୍ରମାନେ ବି ବିଦ୍ରୋହୀ ହୋଇପଡିଥାନ୍ତି ଦେଶ ସାରା। ଦେଶର ସୀମା ଅତିକ୍ରମ କରି ପୃଥିବୀ ସାରା। 'ଦିଲ୍ଲୀ କି ଗଲିୟାଁ' ଉପନ୍ୟାସର ଶେଷ ପଙ୍‌କ୍ତିରେ ନାୟକ ନାସିର୍‌କୁ ଦେଖି ନାୟିକା କାମିନୀ ଭାବୁଛି

'ସତେକି ମୁହୂର୍ତ୍ତଟିଏ ପାଇଁ ସାରା ଦେଶ ଛୋଟିଆ ହୋଇ ନାସିର୍‌ର ଚେହେରାରେ ମିଶି ଯାଉଛି କିମ୍ବା ନାସିର୍‌ର ଚେହେରା ବଡ ହୋଇ ଦେଶସାରା ବ୍ୟାପି ଯାଉଛି।'

ଅମୃତାଙ୍କର ପ୍ରେମ ବି ସେମିତି। ସତେକି ଏ ପୃଥିବୀର ପ୍ରେମ ଖୁବ୍ ଛୋଟ ହୋଇ ତାଙ୍କ ଆତ୍ମାରେ ମିଳେଇ ଯାଇଛି। କିମ୍ବା ତାଙ୍କର ପ୍ରେମ ପୃଥିବୀ ସାରା ବୁଣି ହୋଇପଡିଛି। ପ୍ରେମ ବ୍ୟତୀତ ଅନ୍ୟ କିଛି ଘଟଣା ଘଟି ନାହିଁ ତାଙ୍କ ଜୀବନରେ। ପିଲା ଦିନରୁ ମା' ମରିଯିବା ପରେ ନିଃସଙ୍ଗ ମୁହୂର୍ତ୍ତରେ ତାଙ୍କ କଳ୍ପନାରେ ସିଏ ଗଢିଥିଲେ ନିଜ ପ୍ରେମିକର କାୟା-ତା ନାଁ 'ରାଜନ୍'। କଳ୍ପନାର ସେଇ ରାଜନ୍ ଭିନ୍ନ ଭିନ୍ନ ସମୟରେ- ଭିନ୍ନ ଭିନ୍ନ ପ୍ରେମିକର ରୂପ ନେଇ ଆସିଛନ୍ତି ତାଙ୍କ ଜୀବନକୁ। ତାଙ୍କ ଜୀବନର ପ୍ରିୟତମ ଦୁଇଟି ପୁରୁଷ-ସାହିର ଓ ଇମ୍‌ରୋଜଙ୍କୁ ସେ ନିଜ କଲମରେ ଅମରତ୍ୱ ପ୍ରଦାନ କରିଛନ୍ତି। ସାହିର୍ କବି, ଇମ୍‌ରୋଜ ଚିତ୍ରକର। ନିଜ ପ୍ରତିଭାର ପ୍ରଚୁର ଆଲୋକ ସତ୍ତ୍ୱେ ଉଭୟେ ଅମୃତାଙ୍କର ପ୍ରେମଯୋଗୁଁ ଦେବତା ପାଲଟି ଯାଇଛନ୍ତି।

ସାହିର-ସାହିର୍ ଲୁଧିଆନଭି ଉର୍ଦ୍ଦୁ ଏବଂ ହିନ୍ଦୀ କବିତାର ସେ ଏକ ଜ୍ୱଳନ୍ତ ସ୍ୱର। ହିନ୍ଦୀ ସିନେମା ସଂଗୀତକୁ ପ୍ରେମ ଓ ମାନବିକତାର ଗୀତ ଦେଇଥିଲେ ସାହିର। ଉର୍ଦ୍ଦୁ କବିତାର ପ୍ରଗତିବାଦୀ ଧାରାର ସେ ଅନ୍ୟତମ ମହାନାୟକ। ପ୍ରେମ ପ୍ରବଣ ସାହିରଙ୍କ କବିତା, କିନ୍ତୁ ସାହିର ଥିଲେ ରୋକ୍‌ଠୋକ୍, ଭୀଷଣ ଭାବରେ ପ୍ରାକ୍ଟିକାଲ ଏବଂ ଦେଖିବାକୁ ଅସୁନ୍ଦର। ତାଙ୍କ କବିତାର ଯାଦୁକରୀ ସୌନ୍ଦର୍ଯ୍ୟର ପ୍ରେମରେ ପଡିଥିଲେ ଅସାମାନ୍ୟ ସୁନ୍ଦରୀ ଅମୃତା। ଅମୃତା ଥିଲେ ଭାରତୀୟ ସାହିତ୍ୟର ବୋଧେ ସବୁଠୁ ସୁନ୍ଦରୀ ଲେଖିକା। ସୁନ୍ଦରୀ ନାରୀଟିଏ ଲେଖିକା ହେବା, ପୁଣି ସ୍ୱାଧୀନତା ଓ ସ୍ୱାଭିମାନର କଥା କହିବା, ପ୍ରେମ କାହାଣୀକୁ ଲୁଚେଇ ନରଖି ଖୋଲା ଖୋଲି ଲେଖି ପକେଇବା, ପାରମ୍ପରିକ

ପଞ୍ଜାବୀ ସମାଜରେ ତା' ଥିଲା ନୂଆ ଘଟଣା। ତେଣୁ ତାଙ୍କୁ ନେଇ ପଞ୍ଜାବୀ ସାହିତ୍ୟିକ ମହଲରେ ବହୁ ଗୁଜବ- ବହୁ ଗାଲୁଗପ। ଅମୃତାଙ୍କୁ ଘେରି ଘୂରିବୁଲୁଥିବା ଏକତରଫା ପ୍ରେମକାହାଣୀମାନଙ୍କୁ ନେଇ ପଣ୍ଡିତ ସତ୍ୟେନ୍ଦ୍ର ଶର୍ମା ଗୋଟେ କାହାଣୀ ଲେଖିଥିଲେ ଯା'ର ନା Twenty six men and a girl.

ବାଲ୍ୟ ବିବାହ ଥିଲା ଅମୃତାଙ୍କର। ସର୍ଦ୍ଦାର ପ୍ରୀତମ ସିଂଙ୍କ ସହ ତାଙ୍କ ବିବାହ ବିଚ୍ଛେଦ ପଛରେ ଏକମାତ୍ର କାରଣ ଥିଲା ସେମାନଙ୍କର ଭାବଗତ ଭିନ୍ନତା। ସାହିର୍‌ଙ୍କର ପ୍ରତି ପ୍ରଚୁର ଭଲ ପାଇବା ସତ୍ତ୍ୱେ ସେମାନଙ୍କର ବିବାହ ସମ୍ପନ୍ନ ହୋଇନଥିଲା। ପ୍ରଥମ କାରଣ ଧର୍ମଗତ ଓ ଦ୍ୱିତୀୟ କାରଣ ସାହିରଙ୍କର ବେପରୁଆ-ଅସ୍ଥିର ସ୍ୱଭାବ। ଧାର୍ମିକ ବାଛ ବିଚାରକୁ ନେଇ ସୁନ୍ଦର କଥାଟିଏ କହିଛନ୍ତି ଅମୃତା-

*'ମୁଁ ଦେଖେ ରୋଷେଇ ଘରର ଏକ କୋଣରେ ଅଲଗା ହୋଇ ତିନୋଟି ଗ୍ଲାସ୍ ପଡି ରହିଥାନ୍ତି। ସେ ସବୁ ଗ୍ଲାସ୍ ସେତେବେଳେ ବାହାରକୁ ଆସନ୍ତି ଯଦି କେବେ ବାପାଙ୍କର କୌଣସି ମୁସଲମାନ ସାଙ୍ଗ ଆମ ଘରକୁ ବୁଲି ଆସନ୍ତି। ସେମାନଙ୍କୁ ସେଇ ଗ୍ଲାସ୍‌ରେ ଚା' କି ଲସି ପରଶି ସାରିଲା ପରେ ମାଜି-ଧୋଇ ପୁଣି ଗ୍ଲାସ ତିନୋଟିକୁ ନିଜ ଜାଗାରେ ଥୋଇ ଦିଆଯାଏ। ମୁଁ ବିଦ୍ରୋହ କରି ସେଇ ତିନୋଟି ଗ୍ଲାସ୍‌ରେ ହିଁ ପାଣି ପିଇବାକୁ ଚାହିଁଲି। ମୋ ନାନୀ (ଜେଜେମାଁ)ର ଧାର୍ମିକ ସଂକୀର୍ଣ୍ଣତା ବିରୋଧରେ ସେ ଥିଲା ମୋର ବିଦ୍ରୋହ। ବିଦ୍ରୋହ ସଫଳ ହେଲା। ତା'ପରେ କୌଣସି ଗ୍ଲାସ୍ ହିନ୍ଦୁ ବା ମୁସଲମାନ ହୋଇ ରହିଲେ ନାହିଁ।*

*ସେତେବେଳେ ଅବଶ୍ୟ ନାନୀ ଜାଣିନଥିଲା ନ ଯେ, ବଡ ହେଲା ପରେ ମୁଁ ଯାହାକୁ ପ୍ରେମ କରିବି ସିଏ ସେଇ ଧର୍ମର ହୋଇଥିବ, ଯେଉଁ ଧର୍ମର ଲୋକଙ୍କ ପାଇ ଆମ ଘରେ ଅଲଗା ବାସନର ବ୍ୟବହାର ଥିଲା।'*

ସ୍ୱପ୍ନ ଓ କଳ୍ପନା ପ୍ରତି ଅମୃତାଙ୍କ ଅଙ୍ଗୀକାରବଦ୍ଧତାର ତୁଳନା ନାହିଁ। ସ୍ୱପ୍ନ ଓ କଳ୍ପନା କେବଳ ଅଳୀକ ନୁହଁନ୍ତି, ସେମାନେ ଜୀବନର ଅନ୍ୟତମ ବାସ୍ତବତା। ଜଣେ କଳାକାର ସତ୍ୟକୁ କଳ୍ପନାର ମାର୍ଗରେ ଆବିଷ୍କାର କରିଥାଏ। ତେଣୁ ଯେଉଁମାନେ କହନ୍ତି, କଳ୍ପନା ହେଉଛି ବୃହତ୍ତର ସତ୍ୟ, ସେମାନଙ୍କର ପାଇଁ ଅମୃତାଙ୍କର ଜୀବନ ଏକ ଉଦାହରଣ। ସାମାଜିକ ଯଥାର୍ଥତା ସହ ଭାବପ୍ରବଣତାର ଅପୂର୍ବ ମିଳନ ତାଙ୍କ ସାହିତ୍ୟିକ ସଫଳତାର ମୂଳ ଚାବିକାଠି। ତାଙ୍କର ପ୍ରତି ଚରିତ୍ର କଳ୍ପନାର ଆଲୋକରେ ଉଦ୍‌ଭାସିତ। ସେମାନେ ସ୍ୱପ୍ନ ଦେଖନ୍ତି ଓ ପ୍ରତିଟି ସ୍ୱପ୍ନରେ ଜୀବନର ନୂଆ ଅର୍ଥ ଖୋଜି ପାଆନ୍ତି। ସ୍ୱପ୍ନ ଓ ଜୀବନର ଲୁଚକାଳି ଖେଳ ଭିତରେ ଅମୃତାଙ୍କ ଜୀବନ ପାଲଟିଯାଏ ପୃଥିବୀର ଏକ ଅନନ୍ୟ ପୁସ୍ତକ।

## ସାହିର-ଇମରୋଜ : ପ୍ରେମର ଦୁଇଟି ନାଁ-

ଅମୃତାଙ୍କ ଜୀବନରେ ଅନେକ ପୁରୁଷ ଆସିଛନ୍ତି ଓ ଯାଇଛନ୍ତି। କିନ୍ତୁ ସାହିର ଲୁଧିଆନଭି ଏବଂ ଇମରୋଜ ତାଙ୍କ ଜୀବନକୁ ଏକ ନୂଆ ରୂପରେ ଗଢିଛନ୍ତି। ସାହିର ଥିଲେ ପ୍ରେମ ଓ ବିଦ୍ରୋହର କବି। ତାଙ୍କ ପ୍ରେମ କବିତା ଅନେକ ତରୁଣୀଙ୍କୁ ପାଗଳୀ କରିଛି। ତାଙ୍କ ପ୍ରେମ ସଂଗୀତ ଭାରତୀୟ ସିନେମାରେ ସୃଷ୍ଟି କରିଥିଲା ରୋମାନ୍ସର ଏକ ନୂତନ ଅଧ୍ୟାୟ। ସାହିରଙ୍କ ପାଇଁ କାହାଣୀଟିଏ ଲେଖିଛନ୍ତି ଅମୃତା। କାହାଣୀର ନାଁ 'ସେଇ ପାଗଳୀ ଝିଅ'। ପ୍ରାସଙ୍ଗିକତା ଦୃଷ୍ଟିରୁ ଆମେ ନିମ୍ନରେ ଗପଟିର ମର୍ମାନୁବାଦ ପ୍ରସ୍ତୁତ କରୁଛୁ।

*କିଛି ଦିନ ତଳେ ଅକସ୍ମାତ ଦିନେ ସୁନ୍ଦରୀ ଝିଅଟିଏ ମୋ ପାଖକୁ ଆସିଥିଲା। ତା' ହାତରେ ଥିଲା ଏକ ଫାଇଲ। ଫାଇଲ ମୋ ସାମ୍ନାରେ ଥୋଇଦେଇ ସେ କହିଲା-*

*ଏସବୁ ମୋର କବିତା, ମୁଁ ବହିଟିଏ ବାହାର କରିବି, ଆପଣ ମୁଖବନ୍ଧଟିଏ ଲେଖିଦେବେ ?*

*ତା କହିବାର ଶୈଳୀ ଭାରି ଅଜବ। ତଥାପି ମୁଁ ତା'ର ଫାଇଲ ଖୋଲି ଦେଖିଲି। ସବୁ କବିତା ସାହିର ପାଇଁ ନିବେଦିତ ପ୍ରେମ କବିତା।*

*ମୁଁ ହସି ହସି ତା' ଆଡକୁ ଦେଖିଲି ଏବଂ ପଚାରିଲି-*

*'ତମେ ସାହିରକୁ କେବେ ଭେଟିଥିଲ ?'*

*ସିଏ ରାଗ ତମତମ ହୋଇ କହିଲା-*

*ଭେଟିଲି ଆଉ କେତେବେଳେ, ବଡ ହେଲା ବେଳକୁ ଜାଣିଲି ସାହିର କେବେଠୁ ମରି ସାରିଛନ୍ତି।*

*ମୁଁ ତା ଆଡକୁ ଅନାଇ ରହିଲି ଓ ପଚାରିଲି- ବାହା ହେଇନ ?*

*ସେ କହିଲା- ହଁ ହେଇଛି। ସେଦିନଠୁ ମୋର ବାହାଘର ସରିଛି, ଯେଉଁଦିନ ସାହିରକୁ ପଢିଛି। ନୀରବରେ ମୁଁ କେବଳ ଚାହିଁ ରହିଲି। ଏମିତି ପଚାରିଦେଲି-ମୋର କିଛି ବହି ପଢିଛ ?*

*ପୁଣି ରାଗରେ କହିଲା- ମୁଁ କାହିଁକି ପଢିବି? ଏଠି ସେଠି ଖବର କାଗଜରେ ପଢିଥିଲି- ତମେ ସାହିରକୁ ପ୍ରେମ କରୁଥିଲ ସେଥିପାଇଁ ମୁଁ ଈର୍ଷାରେ ଜଳିଗଲି।*

*ସିଏ ରାଗରେ ଆହୁରି ସୁନ୍ଦର ଦିଶୁଥିଲା। ଆଉ କହିଲା- ଯେବେବି କୌଣସି ବହି*

ଉପରେ ତମର ନାଁ ଦେଖୁଥିଲି, ରାଗରେ ପୋଡ଼ାଡ଼ି ଦେଉଥିଲି। ତମେ ସାହିରକୁ ପ୍ରେମ କରୁଥିଲ କାହିଁକି ?

ଜାଣି ପାରିଲିନି ତାକୁ କ'ଣ କହିବି। ତଥାପି ପଚାରିଲି- ତେବେ ତମେ କାହିଁକି ଚାହୁଁଛ, ମୁଁ ତମର ମୁଖବନ୍ଧ ଲେଖେ ବୋଲି ?

ସେ କହିଲା- ସାହିର ବଞ୍ଚିଥିଲେ ସିଏ ଲେଖିଥାନ୍ତେ, ସିଏ ତ ଏବେ ଦୁନିଆଁରେ ନାହାନ୍ତି, ତେଣୁ ତମ ଛଡ଼ା କିଏ ବା ଆଉ ଲେଖିବ ! ଏତିକି କହି ସିଏ ଫାଇଲ ଥୋଇ ଦେଇ ଘରୁ ବାହାରିଗଲା।

ମନେ ମନେ ଭାବିଲି- ଏ ପାଗଳୀ ଝିଅ ପାଇଁ ନିଶ୍ଚୟ କିଛି ଲେଖିବାକୁ ପଡ଼ିବ। କିଛି ଲେଖିଲି ଆଉ ତା ଫାଇଲ୍‌ରେ ଥୋଇଦେଲି। ଅନେକ ଦିନ ପରେ ସେ ଆସିଲା ଦ୍ୱିତୀୟ ଥର ପାଇଁ। ସେଦିନ ସେ କଳା ରେଶମର ପୋଷାକ ପିନ୍ଧିଥିଲା। ବେକରେ କଉଡ଼ିର ମାଳା। ସେଦିନ ସେ ଆହୁରି ସୁନ୍ଦର ଲାଗୁଥିଲା। ସେଦିନ ମୋର ଦେହ ଭଲ ନଥିଲା। ମୁଁ ବିଛଣାରୁ ଉଠି ପାରୁ ନଥିଲି। ପାଖରେ ପଡ଼ିଥିବା ଚୌକିରେ ବସିବା ପାଇଁ ତାକୁ କହିଲି। ସେ ବସିଲାନି ମୋ ପଲଙ୍କ ପାଖରେ, ତଳେ ବସି କହିଲା- ଶୁଣିଲି ତମେ ବେମାର ପଡ଼ିଛ। ସେଥିପାଇଁ ମୁଁ କହିବାକୁ ଆସିଛି, ଦେଖ ଏବେ ମରିବନି। ତମେ ଏଇଠି ଥାଅ ତମ ଇମରୋଜ ସାଙ୍ଗରେ। ସାହିର ପାଖକୁ ମୁଁ ଯିବି।

ମୁଁ କାନ୍ଧରେ ହାତ ଥୋଇ ଆଶ୍ୱାସନା ଦେଲି।

ସାହିର ଇମରୋଜ ଆଉ ଅମୃତାଙ୍କ ପ୍ରେମ ସତରେ ନିଆରା। ବେଳେବେଳେ ଲାଗେ ସାଧାରଣ ଆଖି ବା ସାଧାରଣ ମନ ନେଇ ଏମିତି ଏକ ଅସାଧାରଣ ସଂପର୍କକୁ ବୁଝି ହେବ ନାହିଁ। ଇମରୋଜ ମଣିଷ ନା ଦେବତା। ଏତେ ପ୍ରେମ, ଏତେ ଅନୁରାଗ, ଏତେ ବିଶ୍ୱାସ-ବେଳେବେଳେ ଅବିଶ୍ୱାସ କରିବାର ଇଛା ହୁଏ ଇମରୋଜଙ୍କ ଚରିତ୍ର ଉପରେ। ଆଉ କାହାକୁ ପ୍ରେମ ଓ ସମର୍ପଣ ବାସ୍ତବରେ ସତ୍ୟ ନା କାହାଣୀ ? ଇମରୋଜଙ୍କ ଉଦାରତାର ଆଉ ଏକ ଝଲକ ଆମେ ପାଇବା 'ପିଠିରେ ଲେଖା ହୋଇଥିବା ନାଁ'ରୁ।

ଥରେ ଇମରୋଜଙ୍କୁ ତାଙ୍କର ଜଣେ ପୁରୁଖା ବନ୍ଧୁ ଭେଟିବାକୁ ଆସିଥିଲେ। ବନ୍ଧୁଙ୍କ ଘର ଲାହୋରରେ। ସେ ଆସି ଇମରୋଜଙ୍କ ଚିତ୍ର ସବୁ ଦେଖୁଥିଲେ। କାନ୍ଥ, ଝରକା ଓ ଦୁଆରରେ ଇମରୋଜ ଅନେକ କବିତାକୁ ଅକ୍ଷରରେ ସଜାଇଥିଲେ। ତାକୁ ବି ଦେଖିଲେ। ଗୋଟିଏ କାନ୍‌ଭାସ୍‌ରେ ସାହିରର ନାଁ ସୁନ୍ଦର ଅକ୍ଷରରେ ଆଙ୍କିଥିଲେ ଇମରୋଜ। ବନ୍ଧୁ ଜଣକ କହିଲେ- 'ତମେ ସାହିରର ନାଁ କେମିତି ଲେଖି ପାରିଲ ? ତାକୁ ତୁମର ଈର୍ଷା

*ହୁଏନି ?' ମୁଁ ପାକିସ୍ତାନରେ ଅମୃତାଙ୍କ 'ରସିଦ ଟିକେଟ' ପଢିଥିଲି । ତେଣୁ ସାହିରଙ୍କୁ ତ ତମେ ଈର୍ଷା କରିବା କଥା । ଇମରୋଜ ହସି ହସି କହିଲେ- ସାହିରର ନାଁ ତ ମୋ ପିଠି ପଛ ପଟେ ଲେଖା ହୋଇଛି । ଅମୃତା ସାଙ୍ଗରେ ମୋ ସଂପର୍କର ଆରମ୍ଭ ବେଳେ ଅମୃତା ରେଡିଓ ଷ୍ଟେସନରେ ଚାକିରି କରୁଥିଲା । ସେତେବେଳେ କାମ ସାରିଲା ପରେ ମୁଁ ତାକୁ ସ୍କୁଟର ପଛପଟେ ବସାଇ ଘରକୁ ଆଣୁଥିଲି । ସ୍କୁଟର ପଛପଟେ ବସି ସେ ସବୁବେଳେ ମୋ ପିଠିରେ ରାସ୍ତା ସାରା କିଛି ଗୋଟେ ଲେଖୁଥିଲା । ପରେ ଜାଣିଲି ସିଏ ସାହିରର ନାଁ ଲେଖୁଥିଲା । ତେଣୁ ସାହିରକୁ ଈର୍ଷା କରିବାର କ'ଣ ଅଛି ? ସିଏ ତ ମୋ ପିଠି ପଛରେ ନାଁ ହୋଇ ଅଙ୍କା ହୋଇଛି ।*

ଏମିତି ସାହିର, ଇମରୋଜ ଓ ଅମୃତାଙ୍କ ସଂପର୍କ । କହିବା ଭାରି କଠିନ ସେ ସଂର୍ପକ ପାର୍ଥିବ କି ଅପାର୍ଥିବ । ସ୍ୱତଃସ୍ଫୂର୍ତ୍ତ କବିତା ପରି ସେ ପ୍ରେମ । ଜଣେ ଆଉ ଜଣକ ପ୍ରତି ପ୍ରଚୁର ଭାବରେ ବିଶ୍ୱସ୍ତ, ସଂପୂର୍ଣ୍ଣ ସମର୍ପିତ । ତ୍ୟାଗ, ନିଷ୍ଠା ଓ ସମର୍ପଣର ଆଧାର ଉପରେ ଗଢା ହୋଇଥିବା ସଂପର୍କ ପୃଥିବୀର ଇତିହାସରେ ଏକ ବିରଳତମ ଘଟଣା ।

ଅମୃତାଙ୍କଠାରୁ ବୟସରେ ସାନ ଇମରୋଜ ଥିଲେ ଜଣେ ଚିତ୍ରଶିଳ୍ପୀ । ତ୍ୟାଗ ଓ ସମର୍ପଣର ଅନୁପମ ଅନୁଭବର ନାଁ ଇମ୍‌ରୋଜ । ନିଜ ଜୀବନକୁ ସିଏ ଗୋଟା ପଣେ ସମର୍ପି ଦେଇଥିଲେ ଅମୃତାଙ୍କ ପାଇଁ । ଅମୃତାଙ୍କର ପ୍ରତ୍ୟେକ ବହିର ଅଲଙ୍କରଣ କରିଛନ୍ତି ଇମ୍‌ରୋଜ । ଅମୃତାଙ୍କ ସହ ଅମୃତାଙ୍କର ପ୍ରେମକୁ ବି ଭଲ ପାଇଛନ୍ତି ସେ । ମରିବାଯାଏ ତାଙ୍କୁ ସ୍ନେହ, ଆଦର-ଯତ୍ନ ଦେଇଛନ୍ତି । ଶେଷ ଚାରିବର୍ଷ ଧରି ପୀଡିତା ଅମୃତାଙ୍କୁ ଛୋଟ ଶିଶୁଟିଏ ପରି ସେବା କରିଛନ୍ତି ।

ଅମୃତାଙ୍କ ପ୍ରେମମୟ ଜୀବନକୁ ଭୋଗିବାକୁ ପଡ଼ିଛି ଅନେକ ଲାଞ୍ଛନା । ସମକାଳୀନ ପଞ୍ଜାବୀ ଲେଖକ ବନ୍ଧୁମାନେ ତାଙ୍କ ପ୍ରତି କେବେବି ଉଦାର ନଥିଲେ । ବରଂ କୁତ୍ସା ଓ ଲାଞ୍ଛନା ଥିଲା ତାଙ୍କ ସାହିତ୍ୟ ସାଧନାର ସବୁଠୁ ବଡ ପୁରସ୍କାର । ପ୍ରେମ ରଙ୍କୁଣୀ ଜୀବନର ସତ୍ୟଶୀଳ ଅନୁଭବକୁ ବୁଝିବାର ସାମର୍ଥ୍ୟ ବା ସାମାନ୍ୟତମ ଉଦାରତାର ସାହିତ୍ୟ ଜଗତରେ ବି ନଥିଲା । ମୃତ୍ୟୁ ପରେ ବି ଏକଦା ଅମୃତାଙ୍କର ଘନିଷ୍ଠ ବନ୍ଧୁ ଖୁସବନ୍ତ ସିଂ 'ଆଉଟ୍ ଲୁକ୍'ରେ ଶୋକ ଆଲେଖ୍ୟ ମାଧ୍ୟମରେ ଲାଞ୍ଛନା ହିଁ ବର୍ଷଣ କରିଛନ୍ତି । ଅବଶ୍ୟ ଖୁସବନ୍ତ ସିଂଙ୍କ ପରି ଲେଖକଙ୍କଠାରୁ ବେଶୀ କିଛି ଆଶା କରିବା ବୃଥା ।

**ନାରୀ ଜୀବନର ଯନ୍ତ୍ରଣା ଗାଥା : କୈଲି, କାମିନୀ, ଅନୀତା :-**

ପଞ୍ଜାବୀ ଭାଷାର ଲେଖିକା ହେଲେ ବି; ଅମୃତାଙ୍କର ରଚନା ସମ୍ଭାରରେ ଅଖଣ୍ଡ ଭାରତ ବର୍ଷର ଚିତ୍ର ଓ ଚରିତ୍ର ରୂପାୟିତ। ଲାହୋରରୁ ଦିଲ୍ଲୀ, ଦିଲ୍ଲୀରୁ ଦେରାଡୁନ୍ ଭାରତ ବର୍ଷର ଜନଜୀବନକୁ ରୂପାୟିତ କରିଥିବାରୁ ସମଗ୍ର ଭାରତ ବର୍ଷରେ ସିଏ ଥିଲେ ଅତ୍ୟନ୍ତ ଲୋକପ୍ରିୟ ଲେଖିକା। ଆମ ସମୟର କ୍ୱଚିତ୍ ଭାରତୀୟ ଲେଖକ ନିଜକୁ ସର୍ବ ଭାରତୀୟ ସ୍ତରରେ ଗ୍ରହଣୀୟ କରିପାରିଛନ୍ତି। ଅମୃତା ସେଇ ବିରଳ ସୌଭାଗ୍ୟର ଅଧିକାରିଣୀ।

ନାରୀ ଜୀବନର ସ୍ୱପ୍ନ ଓ ସ୍ୱପ୍ନଭଙ୍ଗର ଯନ୍ତ୍ରଣା ତାଙ୍କ ଗଳ୍ପ ଓ ଉପନ୍ୟାସର ମୂଳ ବିଷୟବସ୍ତୁ। ତାଙ୍କର ତିନୋଟି ଚର୍ଚ୍ଚିତ ଉପନ୍ୟାସ 'ଏକ ଥି ଅନୀତା, ଦିଲ୍ଲୀ କି ଗଲିୟାଁ ଏବଂ ରଙ୍ଗ କା ପତ୍ତା'ର ତିନିଜଣ ନାୟିକା ଅନୀତା, କାମିନୀ ଓ କୈଲୀଙ୍କ ଜୀବନର ଅନୁଭବ, ସାମଗ୍ରୀକ ଭାବରେ ଭାରତୀୟ ନାରୀର ଅନୁଭବ। ପ୍ରେମ ଓ ସ୍ୱପ୍ନର କାଚଘର ଏବଂ ସାମାଜିକ ଜୀବନର ଏହି ପରସ୍ପର ବିରୋଧୀ ଜୀବନ ତତ୍ତ୍ୱ ଭିତରେ ନାରୀ ଜୀବନର ଯନ୍ତ୍ରଣା, ଅର୍ନ୍ତଦ୍ୱନ୍ଦ୍ୱ, ସଂଘାତ ଓ ଦୁଃଖର କାହାଣୀ କହନ୍ତି ଅମୃତା। ନାରୀର ପାଦତଳେ କଣ୍ଟା ଓ ନିଆଁର ରାସ୍ତା। ସେ ରାସ୍ତାରେ ଚାଲିବାର ରକ୍ତାକ୍ତ ଅନୁଭବରେ ଓଦା ଓଦା ଲାଲେଲାଲ୍ ତାଙ୍କର ଅକ୍ଷର।

'ଏକ ଥି ଅନୀତା' ଅମୃତାଙ୍କ ଜୀବନ କାହାଣୀ ଆଧାରିତ। ଉପନ୍ୟାସର ନାୟିକା ଅନୀତା ଆଗରେ କୌଣସି ରାସ୍ତା ନାହିଁ। ସେ କିନ୍ତୁ ଚାଲୁଛି। ଦୂରରୁ ଏକ ଅଜଣା ସ୍ୱର ତାକୁ ଡାକୁଛି। ଉପନ୍ୟାସର ପ୍ରଥମ ଅଧ୍ୟାୟରେ ଅନୀତା ଜୀବନର ଏକ ବିଚିତ୍ର ସ୍ଥିତିର ବର୍ଣ୍ଣନା ରହିଛି। ନିଜର ନବଜାତ ସନ୍ତାନର ମୁହଁ ଦେଖିଲା ପରେ ଅନୀତାର ଅନୁଭବ ହେଲା- ସେ ବୋଧେ ଗୋଟେ ନାରୀ ନଥିଲା, ଥିଲା ଏକ ମାଛ, ଯିଏ କୂଳରେ ପଡି ଛଟପଟ ହେଉଥିଲା। ଅନୀତା ପୁଣିଥରେ ନିଜ ପୁଅର ମୁହଁକୁ ଚାହିଁଲା ଗଭୀର ଦୃଷ୍ଟିରେ। ତା'ପରେ କେହିଜଣେ ତା'ର ହାତ ଧରି, କୂଳରେ ଛଟପଟ ହେଉଥିବା ମାଛକୁ ପାଣି ଭିତରକୁ ଟାଣି ନେଲା।

ନାରୀ ନା ଜଳର ନା ସ୍ଥଳର ଜୀବ। ତୀରରେ ଛଟପଟ ହେବା ଏବଂ ଗଭୀର ପାଣିରେ ବାଟବଣା ହୋଇ ନିଜର ଅସ୍ତିତ୍ୱକୁ ଖୋଜିବା, ନାରୀର ଭାଗ୍ୟ। ତା'ରି ଭିତରେ ବି ନିଜର ମୁକ୍ତି ଓ ଅସ୍ମିତାକୁ ଖୋଜିପାଏ ନାରୀ ଅମୃତାଙ୍କର କଥା ସାହିତ୍ୟରେ। ଅମୃତାଙ୍କର କଥା ସାହିତ୍ୟରେ ଅମୃତାଙ୍କର ନାୟିକାମାନେ ଭୀଷଣ ସ୍ୱାଭିମାନୀ ଓ ମୁକ୍ତିକାମୀ। ନାରୀ ଜୀବନ ବିଷୟରେ ଅନୀତାର ଭାବନା-

ଏ ଦୁନିଆରେ ସମସ୍ତେ କିଛି କିଛି ଭୁଲ କରନ୍ତି। କିନ୍ତୁ ନାରୀର ତ ଭୁଲ କରିବାର ଅଧିକାର ଟିକକ ବି ନଥାଏ। ବେଳେବେଳେ ଲାଗେ ଜୀବନ୍ତ ବସ୍ତୁ ହେବା ଅପେକ୍ଷା

ପ୍ରାଣହୀନ ହେବା ଯଥେଷ୍ଟ ଭଲ।

ନାରୀ ଜୀବନର ମାର୍ମିକ ଅନୁଭବକୁ ଅନୀତା ମାଧ୍ୟମରେ ପ୍ରାଣସ୍ପର୍ଶୀ ଭାଷା ଓ ଭିନ୍ନ ଏକ ଶୈଳୀରେ ବର୍ଣ୍ଣନା କରିଛନ୍ତି ଅମୃତା। ସାହିର ଓ ଅନୀତାର ପ୍ରେମ ମୁକ୍ତିର ଏକ ଆକାଶ। ସେଠି ବନ୍ଧନ ନାହିଁ। ସାମାଜିକତା ଓ ନୈତିକତାର କୌଣସି ବାଡ ନାହିଁ। ସାହିର୍ ଲୁଧିଆନ୍‌ଭି ଏବଂ ଅମୃତା ପ୍ରୀତମଙ୍କ ବହୁ ଚର୍ଚ୍ଚିତ ପ୍ରେମ କାହାଣୀର ଔପନ୍ୟାସିକ ରୂପାନ୍ତରଣ ବୋଧ ହୁଏ 'ଏକ ଥି ଅନୀତା'। ଅମୃତା ତାଙ୍କର ଆତ୍ମଜୀବନୀ 'ରସିଦି ଟିକଟ'ରେ ସାହିର୍‌ଙ୍କର ସହ ତାଙ୍କ ଅନୁରାଗର ଯେଉଁ ମୁହୂର୍ତ୍ତମାନଙ୍କୁ ଲିପିବଦ୍ଧ କରିଛନ୍ତି, ତା'ର ପ୍ରତିଫଳନ ଘଟିଛି 'ଏକ ଥି ଅନୀତା'ରେ। ପ୍ରେମିକାପଣ ଓ ମାତୃତ୍ୱର ଅନୁପମ ଅନୁଭବର ସୃଜନଗାଥା ହୋଉଛି 'ଏକ ଥି ଅନୀତା'।

ଅନୀତା ମଧ୍ୟବିତ୍ତ-ସହରୀ ନାରୀର ପ୍ରତିନିଧି। କୈଲୀ ଗାଁର ଝିଅ, ଗାଁର ବୋହୂ। ଗ୍ରାମୀଣ ନାରୀ ଜୀବନର ଦୁଃଖ-ଦୈନ୍ୟ ଓ ଅନ୍ତର୍ଦ୍ୱନ୍ଦ୍ୱର ପ୍ରତିଛବି ହେଉଛି କୈଲି। ପ୍ରେମରୁ ନିର୍ବାସିତ କୈଲି ବାହା ହୋଇଛି ଲଖେ ଶାହକୁ, ଯିଏ ପୂର୍ବ ବିବାହିତ ଓ ସନ୍ତାନର ଜନକ। ପ୍ରେମ ଓ କର୍ତ୍ତବ୍ୟର ବିଭାଜିତ ପୃଥିବୀରେ ବିଭକ୍ତ କୈଲିର ସତ୍ତା। ଦୀପକ ପ୍ରତି କୈଲିର ପ୍ରେମ ଓ ସମର୍ପଣର ଯେଉଁ ଭାବନା, ତାରି ସରଳ ଓ ସୁନ୍ଦର ବର୍ଣ୍ଣନା 'ରଙ୍ଗ କା ପତ୍ତା'ର ମୁଖ୍ୟ ଆକର୍ଷଣ। ଜୀବନରେ ପ୍ରେମର ଐଶ୍ୱର୍ଯ୍ୟ (ବୈଧ-ଅବୈଧ, ସ୍ୱକୀୟା-ପରକୀୟା କଥା ଛାଡନ୍ତୁ)କୁ ଶବ୍ଦରେ ସାଉଁଟି ସାଉଁଟି ଯାଯାବରୀ ପ୍ରେମିକାଟିଏ ଚାଲୁଥାଏ ରେଳ ଧାରଣାରେ। ରେଳ ଧାରଣା ଉପରେ ମାଡି ଆସୁଥାଏ ଏକ୍ସପ୍ରେସ୍ ଟ୍ରେନ୍। ପ୍ରେମିକାଟି ମରିପାରେ ନାହିଁ। ପ୍ରେମ କାହାକୁ ମରିବାକୁ ଦିଏ ନାହିଁ। ସେ ପ୍ରେମିକାଟି କିଏ କି? କୈଲି ନା ସ୍ୱୟଂ ଅମୃତା ପ୍ରୀତମ୍?

ଅମୃତାଙ୍କ କଲମରୁ ସୃଷ୍ଟି ହୋଇଥିବା ଆଉ ଏକ ଶକ୍ତିଶାଳୀ ଉପନ୍ୟାସ 'ଦିଲ୍ଲୀ କି ଗଲିୟାଁ' ଉପନ୍ୟାସର ନାୟିକା ଜଣେ ସାମ୍ବାଦିକା। ମହାନଗରୀର ଜୀବନରେ ସ୍ୱାଧୀନତା ଓ ସ୍ୱାଭିମାନକୁ ନେଇ ବଞ୍ଚି ରହିବା ଲାଗି ନାରୀଟିଏର ସଂଘର୍ଷ କାହାଣୀକୁ ବର୍ଣ୍ଣନା କଲାବେଳେ ପାଠକର ମନ ଭିତରକୁ ପ୍ରବେଶ କରିଯାଆନ୍ତି ଲେଖିକା। ଅନୀତା ଅମୃତା ପ୍ରୀତମଙ୍କ ପ୍ରେମରେ କା' ହୋଇଥିବା ବେଳେ କାମିନୀ ତାଙ୍କ କର୍ମୀ ଜୀବନର ଛାୟା। ଉପନ୍ୟାସ ନାୟକ ନାସିରଙ୍କର ଏକ ଚିତ୍ରପଟର ସମୀକ୍ଷା କରିବାକୁ ଯାଇ ନାୟିକା କାମିନୀର କଲମରେ ଅମୃତା ଲେଖୁଛନ୍ତି -

'ଆମେ ଆଜି ଏଇ ଚିତ୍ରକରଙ୍କର ଯେଉଁ ଚିତ୍ରଟି ଦେଖୁଛୁ ସେଥିରେ ଅଛି Woman with a flower, woman with a comb, woman with a bangle...

ଆମେ ସେ ଦିନକୁ ଅପେକ୍ଷା କରିବୁ, ଯେଉଁଦିନ ଏକ ଚିତ୍ରକର ଆଙ୍କିବେ woman with a mind.

ସମାଜ ଓ ବ୍ୟବସ୍ଥା ଉପରେ କି ତୀବ୍ର କଟାକ୍ଷ ! ନାରୀର ସ୍ୱାଭିମାନକୁ ପ୍ରତିଷ୍ଠିତ କରିବା ଲାଗି ଅମୃତାଙ୍କ ପ୍ରୟାସର ଶ୍ରେଷ୍ଠତମ ସଫଳତା ଦିଲ୍ଲୀ କି ଗଲିୟାଁ।

**ଉପସଂହାର :**

ଅମୃତା ହିଁ କହିଥିଲେ- ଯେବେ ମୃତ୍ୟୁ ବହିଟିଏ ଲେଖିବ ତ ଜୀବନ ପାଖକୁ ନିଶ୍ଚୟ ଭୂମିକା ଲେଖାଇବାକୁ ଆସିବ।

ଆଜି ତାଙ୍କର ମୃତ୍ୟୁ ପରେ ମରଣ ନିଶ୍ଚୟ ଭାବରେ ତାଙ୍କ ଜୀବନ ପାଖରେ ଠିଆ ହେବ ଭୂମିକାଟିଏ ଲେଖାଇ ନେବା ପାଇଁ। ତାଙ୍କ ଜୀବନର ଭୂମିକା ଆକାଶ ପରି-ଅନେକ ଆକାଶ ପରି। ସେ ନିଜେ କହିଥିଲେ, 'ଗଙ୍ଗା ଜଳରୁ ଭୋଦ୍‌କା ଯାଏ ମୋ ତୃଷ୍ଣାର ଅନନ୍ତ ଯାତ୍ରା'। ମଦିରା ଓ ଗଙ୍ଗାଜଳ ଭିତରେ ଚିର ସମାହିତ ଅମୃତା ହୁଏତ ବିଲୀନ ହୋଇଯାଇଥିବେ ପଞ୍ଚତତ୍ତ୍ୱରେ। କିନ୍ତୁ ଭାରତୀୟ ଜୀବନରେ ତାଙ୍କ କବିତାର, ତାଙ୍କ କାହାଣୀର, ତାଙ୍କ ଜୀବନନାମାର ଛବି ଶାଶ୍ୱତ ଓ ଅମଳିନ।



# ଅନ୍ଧାରରେ ଅରୁନ୍ଧତୀ ତାରାର ଆଲୁଅ
# ଅରୁନ୍ଧତୀ ରାୟ

"ଦି ଆଲଜେବ୍ରା ଅଫ ଇନ୍‌ଫିନାଇଟ୍ ଜଷ୍ଟିସ୍" ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରତ୍ୟାଖ୍ୟାନ କରିଛନ୍ତି ଅରୁନ୍ଧତୀ ରାୟ । ସତ୍ତା ଓ ବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରି ଆସୁଥିବା ଏହି ପ୍ରଖ୍ୟାତ ଇଂରାଜୀ ଲେଖିକା ସରକାରଙ୍କଠାରୁ କୌଣସି ପୁରସ୍କାର ଗ୍ରହଣ ନକରିବାକୁ ନିଷ୍ପତ୍ତି ନେଇଛନ୍ତି । ସବୁବେଳେ ଲେଖକର ସ୍ୱାଧୀନତା ଏବଂ ବୌଦ୍ଧିକ ସ୍ୱାଭିମାନକୁ ଅଗ୍ରାଧିକାର ଦେଇଛନ୍ତି ଅରୁନ୍ଧତୀ । କଳ୍ପନା ପ୍ରବଣ ସାହିତ୍ୟ ଅପେକ୍ଷା ସାହିତ୍ୟରେ ସାମାଜିକ ଅଙ୍ଗୀକାରବୋଧକୁ ଜୀବନର ଅଙ୍ଗ ଭାବରେ ସେ ଗ୍ରହଣ କରିଛନ୍ତି । 'ଦି ଗଡ ଅଫ୍ ସ୍ମଲ୍ ଥିଙ୍ଗ୍‌ସ'ର ଅଭୂତପୂର୍ବ ସଫଳତା ପରେ ଅନେକେ ଭାବୁଥିଲେ ଅନ୍ୟ ଲେଖକ-ଲେଖିକାଙ୍କ ପରି ସେ ପୃଥିବୀସାରା ଘୁରି ବୁଲିବେ ଓ ସାହିତ୍ୟିକ ବିଳାସରେ ମାତିବେ । କିନ୍ତୁ ଅରୁନ୍ଧତୀଙ୍କ ଜୀବନ ଭିନ୍ନ ଉପାଦାନରେ ଗଢା । ନର୍ମଦା ବଞ୍ଚାଅ ଆନ୍ଦୋଳନ ସହିତ ନିଜକୁ ପୂରାପୂରି ସାମିଲ କରି, ନର୍ମଦା ବିସ୍ଥାପିତଙ୍କ ସହ ଜୀବନ ଯାପନ କରି ସେ ଏକ ନୂଆ ଉଦାହରଣ ସୃଷ୍ଟି କରିଛନ୍ତି ।

କିଛି ଦିନ ତଳେ ଅରୁନ୍ଧତୀଙ୍କ ଜୀବନ ଉପରେ ନିର୍ମାଣ ହୋଇଥିଲା ଏକ ଚଳଚ୍ଚିତ୍ର ' ଡେମ୍-ଏଜ୍' । ଉକ୍ତ ଚଳଚ୍ଚିତ୍ରରେ ନିର୍ଦ୍ଦେଶକ ତାଙ୍କୁ ପ୍ରଶ୍ନ କରିଥିଲେ, ଆପଣଙ୍କ ଘର କି ଗାଁ ବୁଡି ଯାଉନାହିଁ ତଥାପି ଆପଣ ଏତେ ପାଟି କରୁଛନ୍ତି କାହିଁକି ? ଅରୁନ୍ଧତୀଙ୍କ ଉତ୍ତର ଥିଲା, 'ଠିକ୍ କଥା, ମୋ ଗାଁ କି ଘର ବୁଡୁ ନାହିଁ । କିନ୍ତୁ ଜଣେ ଲେଖକ ଭାବରେ ମୋର ଦୃଷ୍ଟି କୋଣ, ମୋର କଳ୍ପନା, ମୋର ସ୍ୱପ୍ନ ଓ ମୋର ବିଶ୍ୱଦୃଷ୍ଟି ବୁଡି ଯାଉଛି ।' ବୋଧେ ସେ ଆମ ସମୟର ଏକମାତ୍ର ଲେଖିକା, ଯିଏ କଲମକୁ ପ୍ରତିବାଦର ରୋମାଣ୍ଟିକ୍ ମାଧ୍ୟମ କେବଳ କରିନାହାନ୍ତି । ଲେଖକ ନିଜେ ପ୍ରତିବାଦୀ ପାଲଟିଛି, ଲଢୁଆ ମଣିଷ ସହ ସଂଗ୍ରାମ କରିବାକୁ ରାସ୍ତାରେ ସ୍ଲୋଗାନ୍ ଦେଉଛି ।

ସୁପ୍ରିମ୍ କୋର୍ଟ ନର୍ମଦା ନଦୀବନ୍ଧ ଉପରେ ଦେଇଥିବା ରାୟ ବିପକ୍ଷରେ ଅତ୍ୟନ୍ତ ସ୍ପଷ୍ଟ ଓ ସ୍ୱାଧୀନ ମତ ପୋଷଣ କରିଥିଲେ। ସେଥିପାଇଁ କାରାବରଣ କରିବାକୁ ମଧ୍ୟ ସେ ପଛାଇ ନଥିଲେ। କାରାବରଣ କରି ଅରୁନ୍ଧତୀ ସୁଚେଇ ଦେଇଥିଲେ ଯେ, ଲେଖକର କଲମ କୌଣସି ସଂକୀର୍ଣ୍ଣତା, ଆଇନ୍‌ର ସୀମିତତା ଓ ମଣିଷ ବିରୋଧି ଜାତୀୟତାର ଗୋଲାମ ନୁହେଁ। ୯୦ ଦଶକରେ ବାଜପାୟୀ ସରକାର ପରମାଣୁ ପରୀକ୍ଷାକୁ ଏକ ଜାତୀୟ ସ୍ୱାଭିମାନର ପ୍ରତୀକ ଭାବରେ ଡିଣ୍ଡିମ ପିଟୁଥିବା ବେଳେ ଅରୁନ୍ଧତୀ ସେତେବେଳେ ଲେଖିଥିଲେ ତାଙ୍କର ପ୍ରସିଦ୍ଧ ପ୍ରବନ୍ଧ 'ଦି ଏଣ୍ଡ ଅଫ୍ ଇମାଜିନେସନ୍'। ପରମାଣୁ ପରୀକ୍ଷା ପୃଥିବୀ ଓ ମାନବିକତାର ଘୋର ଶତ୍ରୁ ଏବଂ ଜଣେ ମାନବବାଦୀ ଲେଖକ ଜାତୀୟତାର ଦାୟରେ ତାକୁ କଦାପି ସମର୍ଥନ କରିବା ଉଚିତ୍ ହେବ ନାହିଁ, ଏହ ଥିଲା ଅରୁନ୍ଧତୀଙ୍କ ଦୃଢ ମତ। ବୃହତ୍ ନଦୀବନ୍ଧ ପ୍ରକଳ୍ପ ଓ ବିସ୍ଥାପନ, ଆମେରିକା ପ୍ରାୟୋଜିତ ଯୁଦ୍ଧ ତଥା ଭୂମଣ୍ଡଳୀକରଣ ନାମରେ ଚାଲିଥିବା ଭାଣ୍ଡାମୀ ବିରୁଦ୍ଧରେ ଅରୁନ୍ଧତୀ ଲେଖିଛନ୍ତି- 'ଦି ଗ୍ରେଟର କମନ୍ ଗୁଡ', 'ପାୱାର ପଲିଟିକ୍ସ', କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ତାଙ୍କର ନେହେରୁ ବକ୍ତୃତା 'ଦି କଷ୍ଟ ଅଫ୍ ଲିଭିଂ' ଏବଂ ଶେଷ ପୁସ୍ତକ 'ଦ ଆଲଜେବ୍ରା ଅଫ୍ ଇନିଫିନାଇଟ୍ ଜଷ୍ଟିସ୍'।

ତାଙ୍କର ଦୃଢ ଓ ସ୍ୱାଧୀନ ମତାମତ ପାଇଁ ତାଙ୍କୁ ବହୁ ସମୟରେ ଭର୍ତ୍ସିତ ହେବାକୁ ପଡିଛି। ୨୦୦୧ରେ ବିଶିଷ୍ଟ ନୃତତ୍ତ୍ୱବିତ୍ ଲେଖକ ରାମଚନ୍ଦ୍ର ଗୁହା ତାଙ୍କୁ ପ୍ରଚୁର ସମାଲୋଚନା କରିଥିଲେ। ରାମଚନ୍ଦ୍ରଙ୍କୁ ଉତ୍ତର ଦେବାକୁ ଯାଇ ଅରୁନ୍ଧତୀ କହିଥିଲେ, I wear that criticism as a badge of honour. ସତ୍ୟ ଓ ସ୍ୱାଧୀନତା ପାଇଁ କେବେ ବି କୌଣସି ପ୍ରକାର ସାଲିସ୍ କରିବା ଅରୁନ୍ଧତୀଙ୍କ ଜାତକରେ ନାହିଁ। ଏକଦା ତାଙ୍କର ଏକ ସାକ୍ଷାତକାରରେ ଅରୁନ୍ଧତୀ କହିଥିଲେ, - 'ମୁଁ ସ୍ପଷ୍ଟ କହିବାକୁ ଚାହେଁ ଯେ, ମୁଁ ଜଣେ ସ୍ୱାଧୀନ ନାଗରିକ, ମୋର କୌଣସି ଦଳ ନାହିଁ।' ମୁଁ ସ୍ପଷ୍ଟ ଭାବରେ ଏବଂ ଅତ୍ୟନ୍ତ ଦାୟିତ୍ୱର ସହ ମୋର ମତାମତ ଦିଏ। ମୁଁ ଯାହା ଭାବେ ତାହା କହେ। ଏଥିରେ ଯଦି କାହାକୁ କିଛି ବାଧୁଛି ମୁଁ କ'ଣ କରିପାରିବି ? ସ୍ୱାଧୀନ ଏବଂ ସଚେତନ ନାଗରିକ ହେବା ଜଣେ ଲେଖକର ପ୍ରଥମ କର୍ତ୍ତବ୍ୟ। ଏକଥା ଅରୁନ୍ଧତୀ ରାୟ ତାଙ୍କ କାର୍ଯ୍ୟରେ ପ୍ରଦର୍ଶିତ କରିଛନ୍ତି।

ଗୋଟେ ଧାରଣା ଥିଲା ଜଣେ ଲେଖକ ଯାହା ଲେଖୁଛି ତାକୁ ପଢାଯାଉ। କିନ୍ତୁ ଯାହା କରୁଛି ସେ ବିଷୟରେ ପ୍ରଶ୍ନ ଅପ୍ରାସଙ୍ଗିକ। ଅରୁନ୍ଧତୀ ରାୟ ସେ ଧାରଣା ସମୂଳେ ବଦଳାଇଦେଲେ। ଜଣେ ଲେଖକର ଲେଖା ଓ ଜୀବନ କେତେ ଅଙ୍ଗାଙ୍ଗୀ ତା'ର ପ୍ରମାଣ

ଅରୁନ୍ଧତୀଙ୍କ ଜୀବନଶୈଳୀ। ନର୍ମଦା ବଞ୍ଚାଓ ଆନ୍ଦୋଳନର ନେତ୍ରୀ ମେଧା ପାଟକରଙ୍କ ସହ ସବୁବେଳେ ସାମିଲ୍ ହୋଇଛନ୍ତି ସେ। ସାହିତ୍ୟିକ ବକ୍‌ବାଜି ଅପେକ୍ଷା ନିଜର ସାମାଜିକ ଦାୟିତ୍ୱବୋଧ ନିକଟରେ ସେ ସମର୍ପିଛନ୍ତି ତାଙ୍କ କଲମକୁ। ସେଥିପାଇଁ ତାଙ୍କ କଲମରେ ଯାହା ବି ଲେଖା ହୁଏ, ସେଥିରେ ଥାଏ ଏକ ବିରଳ ସାମର୍ଥ୍ୟ। ସରକାର, ବିଚାରାଳୟ ଏବଂ ସାଥି ବୁଦ୍ଧିଜୀବିଙ୍କର ବିନା ସହାୟତାରେ ଏକଲା ସଂଗ୍ରାମ କରୁଛନ୍ତି ସେ। ନୀରବ ରହିବା କିମ୍ବା ପ୍ରତିବାଦ ନକରିବାକୁ ସେ ବୌଦ୍ଧିକ କାପୁରୁଷତା ବୋଲି କହନ୍ତି। ୧୪, ଅଗଷ୍ଟ ୧୯୯୮ରେ 'ଦି ଏଣ୍ଡ ଅଫ୍ ଇମାଜିନେସନ୍'ରେ ଅରୁନ୍ଧତୀ କହିଥିଲେ, 'ଜାଣି ଜାଣି ନୀରବ ରହିବାଠୁ ଅପମାନଜନକ ଜିନିଷ ଆଉ କିଛି ନାହିଁ'। ମୁଁ ନିଜକୁ ଲଜ୍ଜିତ କରିବାକୁ ଦେବି ନାହିଁ। ଆଜିର ପରିସ୍ଥିତିରେ ନୀରବ ରହିବାକୁ ମୁଁ କଦାପି ପସନ୍ଦ କରୁନାହିଁ। ପୁନଶ୍ଚ 'ଦି କଷ୍ଟ ଅଫ୍ ଲିଭିଂ'ରେ ତାଙ୍କର ମତ ଥିଲା, 'ତମେ ଯଦି ଜଣେ ଲେଖକ, ତମକୁ ସେଇ ଯନ୍ତ୍ରଣା କାତର ଆଖିମାନଙ୍କୁ ଖୋଲିବାକୁ ପଡିବ। ତମକୁ ସବୁଦିନ ମନେ ରଖିବାକୁ ପଡିବ ଯେ ନିରୀହତା ବୋଲି କିଛି ନାହିଁ। ପ୍ରତିଦିନ ତମକୁ ସେହି ପୁରୁଣା ଓ ସ୍ୱାଭାବିକ କଥା ସବୁ କହିବା ପାଇଁ ନୂଆ ନୂଆ ଉପାୟ ଖୋଜିବାକୁ ପଡିବ। ପ୍ରେମ ଓ ଲୋଭ, ରାଜନୀତି ଓ ସରକାର, କ୍ଷମତା ଓ କ୍ଷମତାହୀନତା ଏସବୁ ବିଷୟରେ ଯାହାସବୁ କୁହାଯାଇଛି ତାହାକୁ ପୁଣି ପୁଣି ତୁମକୁ କହିବାକୁ ପଡିବ।'

ସାହିତ୍ୟ ଏକାଡେମୀ ପୁରସ୍କାର ଫେରେଇଦେବା ପରେ ଅରୁନ୍ଧତୀଙ୍କୁ ଅଭିନନ୍ଦନ ଜଣେଇବାର ବିଶେଷ କିଛି ନାହିଁ। କାରଣ ବହୁ ପୁରସ୍କାର ଅରୁନ୍ଧତୀଙ୍କ ପଛରେ ପଡିଥାନ୍ତି। କିନ୍ତୁ ସାହିତ୍ୟ ଏକାଡେମୀର ସଂପାଦକ କେ. ସଚ୍ଚିଦାନନ୍ଦନ୍ ଏବଂ ଇଂରାଜୀ ଭାଷାର ଜୁରୀଙ୍କୁ ନିହାତି ଅଭିନନ୍ଦନ ଜଣାଇବାକୁ ପଡିବ, କାରଣ ସେମାନେ ଅରୁନ୍ଧତୀଙ୍କୁ ପୁରସ୍କାର ପାଇଁ ବାଛିଛନ୍ତି ଏବଂ ସାହିତ୍ୟ ଏକାଡେମୀ ଯେ ସରକାରଙ୍କ ଏକ ଭଡାଟିଆ ସଂସ୍ଥା ଏହି ବିଶ୍ୱାସକୁ ଭାଙ୍ଗିଛନ୍ତି। ସତ୍ୟ ଓ ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥିବା ଅରୁନ୍ଧତୀ ରାୟ ଆମ ସାହିତ୍ୟିକ ଉଦାସୀନତାର ଅନ୍ଧାରରେ ଅରୁନ୍ଧତୀ ତାରା ଆଲୁଅ। ତାଙ୍କୁ ଆମର ସଲାମ୍।



# ଜୀବନର ମନ୍ତ୍ରଶକ୍ତି ଓ ମନ୍ତ୍ରଶକ୍ତିର ଜୀବନ ଭୀମଭୋଇ

ଆପଣ ଯଦି କେବେ ରେଢାଖୋଲ ଯିବେ, ତେବେ ସହରର କେନ୍ଦ୍ର ଛକରେ ଏକ ଗେରୁଆ ରଂଗର ପ୍ରତିମୂର୍ତ୍ତି ଠିଆ ହୋଇଥିବାର ଦେଖିବେ। ତାଙ୍କ ମୁଣ୍ଡ ଉପରେ ତାଳପତ୍ରର ଛତା, ହାତରେ ଖଂଜଣି, ଆଖିରେ ଜଗତ ପାଇଁ ମମତା ଓ କରୁଣା, ମୁହଁରେ ପୃଥିବୀ ପାଇଁ ଅଶେଷ ପ୍ରେମ- ସେ ଗୋଟାପଣେ ଲାଗୁଥିବେ କବିତାର ଏକ ମୂର୍ତ୍ତିମନ୍ତ ପ୍ରତୀକ। ସେ ଭୀମଭୋଇ, ଓଡ଼ିଆ କବିତାର ଜାଗ୍ରତ ବିବେକ। ଜୀବନ କାଳ ଭିତରେ କିମ୍ବଦନ୍ତୀ ପାଲଟି ଯାଇଥିବା ଭୀମ ଭୋଇଙ୍କ ଜୀବନ ଓଡ଼ିଆ ଜାତି ପାଇଁ ଏକ ଅଦ୍‌ଭୂତ ରହସ୍ୟ। ଏବେ ବି ଭୀମ ଭୋଇ ବୋଇଲେ ଜଣେ ଅନ୍ଧ, କନ୍ଧ, ବୁଢା ସନ୍ୟାସୀଙ୍କ ଚେହେରା ଆମ ସ୍ମୃତିରେ ଭାସିଉଠେ। ସେ କନ୍ଧ ଥିଲେ ନିଶ୍ଚୟ, କିନ୍ତୁ ତାଙ୍କର ଅନ୍ଧତ୍ୱ ଓ ଆୟୁଷକୁ ନେଇ ବହୁବାଦ ବିବାଦ ଏବେ ବି ଜାରି ରହିଛି। ତାଙ୍କର ଜନ୍ମ ଜାତକ ଓ ଜନ୍ମସ୍ଥାନକୁ ନେଇ ବିତର୍କ ଓଡ଼ିଆ ସାହିତ୍ୟର ଏକ ପ୍ରମୁଖ ପ୍ରସଙ୍ଗ। ଏହି ସମ୍ବେଦନଶୀଳ ପ୍ରସଙ୍ଗ ଉପରେ ଗଭୀର ଭାବରେ ବିଚାର କରିବାର ସମୟ ଉପନୀତ।

## ଜନ୍ମ ଓ ଜନ୍ମସ୍ଥାନ ପ୍ରସଙ୍ଗ :

ରେଢାଖୋଲ ଏବଂ ସୋନପୁର ଦୁଇଟି ପ୍ରାଚୀନ ଗଡଜାତ ଅଞ୍ଚଳ। ଏହି ଗଡଜାତ ଦୁଇଟିର ମଝାମଝି ଚାରି ପାଞ୍ଚ ଖଣ୍ଡ ଗାଁକୁ ନେଇ ଭୀମ ଭୋଇଙ୍କ ଜନ୍ମସ୍ଥାନ ସଂପର୍କରେ ବିବାଦ ଲାଗି ରହିଛି। ସୋନପୁରର ଜଟାସିଂହା ଏବଂ ରେଢାଖୋଲର ଗ୍ରାମଡିହା-କାଙ୍କଣପଡା ଏବଂ ମଧୁପୁର ଗାଁକୁ ତାଙ୍କ ଜନ୍ମସ୍ଥାନ ବୋଲି ଗବେଷକମାନ ଦାବି ଉପସ୍ଥାପନ କରନ୍ତି। ନିଜ ଜନ୍ମସ୍ଥାନ ବିଷୟରେ ସ୍ୱୟଂ ଭୀମ ଭୋଇ କୌଣସି ସୂଚନା ପ୍ରଦାନ କରିନାହାନ୍ତି। ତାଙ୍କ ଲେଖାମାନଙ୍କରେ ନିଜ ଜୀବନ ସଂପର୍କରେ କିଛି କିଛି ତଥ୍ୟ ଉପସ୍ଥାପିତ

ହୋଇଥିଲେ ହେଁ, ତାଙ୍କ ଜନ୍ମ ସମୟ, ଜନ୍ମସ୍ଥାନ ଓ ପିତାମାତାଙ୍କ ପରିଚୟ ବିଷୟରେ କିଛି ଉଲ୍ଲେଖ ନାହିଁ। ତାଙ୍କର ଏକ ଅପ୍ରକାଶିତ ପାଣ୍ଡୁଲିପି 'ମହିମା ବିନୋଦ'ରେ ଗୁରୁ ମହିମା ଗୋସାଇଁଙ୍କର ସବିଶେଷ ପରିଚୟ ବର୍ଣ୍ଣିତ ହୋଇଥିବା ବେଳେ ନିଜର ଜାଗତିକ ପରିଚୟ ସଂପର୍କରେ ସେ ନୀରବ। ତାଙ୍କ ପିତାମାତାଙ୍କ ନାମ ଜନାର୍ଦ୍ଦନ ଭୋଇ ଓ ମହରଗୀ ଭୋଇ (ଭିନ୍ନ ମତରେ ଦନାର ଭୋଇ ଓ ଗୁରୁବାରି ଭୋଇ) ବୋଲି କୁହାଯାଇଛି। କିନ୍ତୁ ଭୀମ ଭୋଇ ତାଙ୍କର ଜନ୍ମିତ ସନ୍ତାନ ନଥିଲେ। ଗାଁ ମୁଣ୍ଡ ତାଳବଣିଆରୁ ଏକ ପରିତ୍ୟକ୍ତ ଶିଶୁକୁ ଉଦ୍ଧାର କରି ସେମାନେ ତାକୁ ଲାଳନ ପାଳନ କରିଥିବାର ଜନଶ୍ରୁତି ରହିଛି। ରେଢାଖୋଲ ଏବଂ ସୋନପୁର ସୀମାନ୍ତ ଅଞ୍ଚଳରେ ଭୀମ ଭୋଇଙ୍କ ଜନ୍ମ ଓ ଜୀବନକୁ ନେଇ ବହୁ ଲୋକ କାହାଣୀ ଓ ଢଗ ଢମାଳି ପ୍ରଚଳିତ।

ତାଙ୍କ ବାଲ୍ୟକାଳ ଯେ ଆଦୌ ସୁଖକର ନଥିଲା, ଏକଥା 'ସ୍ତୁତି ଚିନ୍ତାମଣି'ରେ ସେ ଉଲ୍ଲେଖ କରିଛନ୍ତି-

'ବୁଲୁଥାଇ ବନେ ନିତି ପ୍ରତିଦିନେ
ବଛାକୁ ସଙ୍ଗତେ ଘେନି
କ୍ଷୁଧା ତୃଷା କଲେ ଜୀବନ ବିକଳେ
ପିଉ ଥାଇ ଝର ପାଣି ॥'

ପିଲାଦିନରୁ ପିତାଙ୍କ ମୃତ୍ୟୁ ପରେ ଅତ୍ୟନ୍ତ ଦୟନୀୟ ଭାବରେ ଜୀବନ ଯାପନ କରୁଥିବାର କରୁଣ କାହାଣୀ 'ସ୍ତୁତି ଚିନ୍ତାମଣି'ର ୨୨ ଏବଂ ୨୩ ବୋଲିରେ ସେ ଉଲ୍ଲେଖ କରିଛନ୍ତି। ଏଠି ଆଉ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଚର୍ଚ୍ଚାକୁ ଆସେ, ତାହା ହେଲା ଭୀମ ଭୋଇଙ୍କ ଅନ୍ଧତ୍ୱ ପ୍ରସଙ୍ଗ। ଭୀମ ଭୋଇ ଜନ୍ମରୁ ଅନ୍ଧ ଥିଲେ ବୋଲି ଆମର ଏକ ପ୍ରଚଳିତ ଧାରଣା ରହିଛି। ଏ ସଂପର୍କରେ ଗବେଷକମାନଙ୍କ ମଧ୍ୟରେ ବାଦାନୁବାଦ ରହିଛି।

୧୯.୧୧.୧୮୮୧ 'ଉତ୍କଳ ଦୀପିକା'ରେ ପ୍ରକାଶିତ ଏକ ସମ୍ବାଦରେ- "ଭୀମ ଭୋଇ ଜନ୍ମାନ୍ଧ କିନ୍ତୁ ବଡ ବୁଦ୍ଧିମନ୍ତ" ବୋଲି ଉଲ୍ଲେଖ ରହିଛି। ସେହିପରି ୧୮୮୧ରେ ଢେଙ୍କାନାଳ ମ୍ୟାନେଜର ତାଙ୍କର ଏକ ରିପୋର୍ଟରେ ଲେଖିଛନ୍ତି - Bhima Bhoi, a khond, who is said to have been born blind, and afterwards endowed with sight by the Mahima Swami. ଅନ୍ୟତମ ପ୍ରଖ୍ୟାତ ଐତିହାସିକ ବିଜୟ ଚନ୍ଦ୍ର ମଜୁମ୍‌ଦାର ତାଙ୍କର "ସୋନପୁର ଇନ୍ ସମ୍ବଲପୁର ଟ୍ରାକ୍ଟ'

ପୁସ୍ତକର  ପରିଶିଷ୍ଟରେ ଭୀମ ଭୋଇ ଜନ୍ମାନ୍ଧ ବୋଲି କହିଥିବା ବେଳେ ତାଙ୍କର ଅନ୍ୟ ପୁସ୍ତକ  A Typical Selections from Oriya Poetryରେ ନିଜ ମତକୁ ଖଣ୍ଡନ କରିଛନ୍ତି। ଏହି ମତକୁ ବିନା ବିଚାରରେ ପ୍ରାୟ ଐତିହାସିକ ଗ୍ରହଣ କରିନେଇଛନ୍ତି। ୧୯୩୧ରେ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ 'ବ୍ରହ୍ମ ନିରୂପଣ ଗୀତା'ର ମୁଖବନ୍ଧରେ ରାୟବାହାଦୂର ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ମତକୁ ଖଣ୍ଡନ କରି ସୋନପୁର ମହାରାଜା ବୀରମିତ୍ର ସିଂହଦେଓ ଲେଖିଥିଲେ- "ଭୀମ ଭୋଇଙ୍କର ପରବର୍ତ୍ତୀ କେତେକ ଶିଷ୍ୟମାନେ ତାହାଙ୍କୁ ଜନ୍ମାନ୍ଧ ବୋଲି ଲେଖିଛନ୍ତି। ପରନ୍ତୁ ମହାତ୍ମା ଭୀମ ଭୋଇ ଗ୍ରାମୀୟ ଗୋଚାରଣ କାର୍ଯ୍ୟ କରିବା ଦ୍ୱାରା ତାହାଙ୍କ ଅଧିକ ବାଲ୍ୟଜୀବନ ଯାପନ କରିଛନ୍ତି। ଜଣେ ଅନ୍ଧ ବ୍ୟକ୍ତି ଗୋରୁ ଚରାଇ ନିର୍ବିବାଦରେ ଜୀବିକା ଚଳାଇବା ଅସମ୍ଭବ। ଅନେକ ସମୟ ପର୍ଯ୍ୟନ୍ତ ତାହାଙ୍କ ଆଖି ଦିଶୁଥିଲା। ତାହାଙ୍କ ସମଧର୍ମାବଲମ୍ବୀ ବ୍ୟକ୍ତିଗଣ ଓ ଶିଷ୍ୟ ସମ୍ପ୍ରଦାୟ ଭୀମ ଭୋଇଙ୍କର ମାହାତ୍ମ୍ୟ ବଢାଇବା ଉଦ୍ଦେଶ୍ୟରେ ଜନ୍ମାନ୍ଧ ବୋଲି ନିଜ ନିଜ ପ୍ରବନ୍ଧରେ ଲେଖିଥିବା ବିଶ୍ୱାସ ହୁଏ। ଏହି କଥା ଭୀମ ଭୋଇ ମଧ୍ୟ ନିଜ ରଚନାରେ ପ୍ରକାଶ କରିଅଛନ୍ତି। ଯେତେବେଳେ ସେ କାହାରିଠାରୁ କିଛି ଆତ୍ମ ପ୍ରଶଂସା ଶୁଣନ୍ତି, 'ମୁଁ ଜାଣେ ଜନ୍ମାନ୍ଧ ତୁଚ୍ଛ ଜୀବ, ସମସ୍ତ ଗୁରୁକୃପା' ବୋଲି କହିଥାନ୍ତି। ଭୀମ ଭୋଇଙ୍କ କୈଶୋରାବସ୍ଥାରେ କୌଣସି ନେତ୍ରରୋଗ ଦ୍ୱାରା ପରଳ ପଡି ତାହାଙ୍କ ଚକ୍ଷୁ ଦୁଇଟି ଅଦୃଶ୍ୟ ହୋଇଥିବା ଅନେକ ପ୍ରତ୍ୟକ୍ଷଦର୍ଶୀ କହିଅଛନ୍ତି। ଏପରି ଅବସ୍ଥାରେ ଅନ୍ୟ ପ୍ରମାଣ ସଂଗ୍ରହର ପ୍ରୟୋଜନ ଜଣା ପଡୁନାହିଁ।"

ମହାରାଜାଙ୍କର ଏହି ବକ୍ତବ୍ୟ ପରେ ଭୀମ ଭୋଇଙ୍କ ଅନ୍ଧତ୍ୱ ସଂପର୍କରେ ବିଶେଷ ପ୍ରଶ୍ନବାଚୀ ନରହିବା କଥା। କିନ୍ତୁ ଆଜି ପର୍ଯ୍ୟନ୍ତ ଭୀମ ଭୋଇଙ୍କୁ ଆଜନ୍ମ ଅନ୍ଧ ବୋଲି ଆମେ ବିଶ୍ୱାସ କରି ଆସୁଛୁ। ଭୀମ ଭୋଇଙ୍କ ସାଧନା ଓ ସମାଧି ପୀଠ ସୋନପୁର ଜିଲ୍ଲାର ଖଲିଆପାଲି ଗାଁରେ ରହୁଥିବା ତାଙ୍କର ପ୍ରିୟ ପରିଜନମାନେ, ସେ ଜନ୍ମାନ୍ଧ ନଥିଲେ ବୋଲି କହିଥାନ୍ତି। ଭୀମ ଭୋଇଙ୍କ ନିଜ ଲେଖାରେ ମଧ୍ୟ ଅନେକ ସ୍ଥଳରେ ଦେଖୁଥିବା ଦୃଶ୍ୟର ଜୀବନ୍ତ ବର୍ଣ୍ଣନା ରହିଛି। ଜୀବନରେ ପ୍ରଥମେ ଯେତେବେଳେ ସେ ତାଙ୍କର ଗୁରୁ ମହିମା ସ୍ୱାମୀଙ୍କର ଦର୍ଶନ କରିଛନ୍ତି, ତା'ର ବର୍ଣ୍ଣନା କରି 'ସ୍ତୁତି ଚିନ୍ତାମଣି' ୨୧ ବୋଲିରେ ଲେଖିଛନ୍ତି-

ଚାରି ବରଷ ସମ୍ପୂର୍ଣ୍ଣ ସମୟରେ ଦେଖାଥିଲା ଜ୍ୟେଷ୍ଠମାସେ।
ନିର୍ବେଦ କର୍ମେ ଯୋଗୀପୁତ୍ର ଗୋଟିଏ ଭ୍ରମୁଥିଲେ ଗ୍ରାମଦେଶେ ॥
'କଷା କଉପୀନ ଚଢାଇ ସେ ପୁଣି ଦିଶୁଥାନ୍ତି ଅପ୍ରଚ୍ଛନ୍ନ।
ବେନି ଭୁଜରେ ପ୍ରତ୍ୟକ୍ଷେ ଦେଖିଅଛି ଥିଲା ଶଙ୍ଖ ଚକ୍ର ଚିହ୍ନ ॥'

ସୁତରାଂ ଭୀମ ଭୋଇଙ୍କ ଅନ୍ଧତ୍ୱକୁ ନେଇ ଉଠିଥିବା ପ୍ରଶ୍ନବାଚୀର ସରଳ ଉତ୍ତର ଏଇ ପଦରେ ନିହିତ ଅଛି ବୋଲି ଗବେଷକମାନେ କହନ୍ତି। ଜତିରେ କନ୍ଧ ଏବଂ ଏକ ନୂତନ ଧର୍ମର ବାର୍ତ୍ତା ପ୍ରଚାର କରୁଥିବା ଜଣେ ଗ୍ରାମୀଣ ଚାରଣ କବିଙ୍କୁ ଈଶ୍ୱରୀୟ ମହିମାରେ ଅଭିଷିକ୍ତ କରିବା ପାଇଁ ଏହା ଏକ ପ୍ରକାର ଭାକ୍ତିକ ଉଦ୍ୟମ ବୋଲି ଆଉ କେତେକ ମତ ପ୍ରଦାନ କରିଥାନ୍ତି।

## ଜୀବନ : କିମ୍ବଦନ୍ତୀ

ଭୀମ ଭୋଇଙ୍କ ଜୀବନ ସଂପର୍କରେ ଗବେଷଣା କଲାବେଳେ ତଥ୍ୟ ଅପେକ୍ଷା କାହାଣୀ ଓ କିମ୍ବଦନ୍ତୀର ଗୁରୁତ୍ୱ ବେଶୀ। ନିଜ ଜୀବନ ସଂପର୍କରେ ଖୁବ୍ ଅଳ୍ପ ସୂଚନା ଭୀମ ଭୋଇ ଦେଇଛନ୍ତି। ତାଙ୍କର ଅପ୍ରକାଶିତ ପାଣ୍ଡୁଲିପି 'ମହିମା ବିନୋଦ'ର ସତ୍ୟାସତ୍ୟ ଆଜି ପର୍ଯ୍ୟନ୍ତ ଆବିଷ୍କୃତ ହୋଇପାରି ନାହିଁ। ଜଣେ ରକ୍ତ ମାଂସର ମଣିଷ ଭାବରେ ତାଙ୍କୁ ତାଙ୍କର ଭକ୍ତମାନେ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହଁନ୍ତି। କବି ଶ୍ରୀଧର ଦାସ ତାଙ୍କ 'ସିଦ୍ଧ ଚନ୍ଦ୍ରିକା' ଗ୍ରନ୍ଥରେ ଭୀମ ଭୋଇ ରେଢାଖୋଲରେ ଅନ୍ଧ ହୋଇ ଜନ୍ମଗ୍ରହଣ କରିବେ ବୋଲି କୁଆଡେ ଭବିଷ୍ୟବାଣୀ କରିଥିଲେ। ମହାପୁରୁଷ ଅଚ୍ୟୁତାନନ୍ଦ ମଧ୍ୟ ଲେଖିଥିଲେ–

'ଏ ନିତ୍ୟ ରାଧା ମହାସତୀ। ମର୍ତ୍ତ୍ୟେ ହୋଇବ ଉତପତି ॥
ପୁଂଲିଙ୍ଗେ ପ୍ରକାଶ ତା କାୟ। ଅଂତି ଦରିଦ୍ରାବସ୍ଥା ଦେହ ॥
କୁଳଶୀଳ ତା ଅଟେ କନ୍ଧ। ସେ ଭକ୍ତ କୁଳେ ଦୁତୀଚାନ୍ଦ ॥'

'ଭ୍ରମି ଏକାନ୍ତ ଗ୍ରାମପୁରେ। ଯେ ଜମ୍ବୁଦୀପ ଧରିତ୍ରୀରେ ॥
ଯେ ନିତ୍ୟେ ରାଧା ମୋ ଭଗତ। ସେ ମର୍ତ୍ତ୍ୟେ ହୋଇଥିବ ଜାତ ॥
ତା ଦ୍ୱାରେ ପ୍ରବେଶିବୁ ଯାଇ। ତା ନାମ ଅଟେ ଭୀମ ଭୋଇ ॥'

(କଳ୍ପ ସଂହିତା)

ତେବେ ଏହି ମାଳିକାମାନଙ୍କର ରଚନା କାଳ ଏବଂ ସତ୍ୟାସତ୍ୟକୁ ନେଇ ସନ୍ଦେହ ରହିଛି। କିନ୍ତୁ ଲୋକମୁଖରେ ଭୀମ ଭୋଇଙ୍କ ଜନ୍ମ ଓ ଅନ୍ଧତ୍ୱକୁ ନେଇ ବହୁ ବିଚିତ୍ର କାହାଣୀ ଶୁଣିବାକୁ ମିଳେ। ଗାଁର ତାଳବଣିଆରେ ସେ ଅନାଥ ହୋଇ ପଡି ରହିଥିବାର ଓ ତାଙ୍କୁ ଦନାର ଭୋଇ ଘରକୁ ଆଣି ଲାଳନ ପାଳନ କରିବାର ପାଖାପାଖି ପଚିଶ ଗୋଟି କାହାଣୀ ମୁଁ କ୍ଷେତ୍ର ଅଧ୍ୟୟନ ସମୟରେ ସଂଗ୍ରହ କରିଛି। ବାଲ୍ୟକାଳରୁ ତାଙ୍କ ଭିତରେ

ଅଲୌକିକ ଶକ୍ତିର ସ୍ଫୁରଣ ଘଟିଥିଲା ବୋଲି ଗ୍ରାମଡିହା-କାଙ୍କଣପଡା, କନ୍ଧରା, ସଂଗ୍ରାମପୁର, ଜଟାସିଂହା, କୁମରକେଲି ଇତ୍ୟାଦି ଗ୍ରାମର ପୁରୁଖା ଲୋକମାନେ କହିଥାନ୍ତି।

ମହିମା ଧର୍ମରେ ତାଙ୍କର ପ୍ରବେଶ ଓ ମହିମା ଗୋସାଇଁଙ୍କ ଭେଟ ସଂପର୍କରେ ଏକ ବହୁ ଚର୍ଚ୍ଚିତ କାହାଣୀ ଏଠି ଉଦ୍ଧାର କରାଯାଉଛି।

ଭୀମ ଭୋଇ ପ୍ରତିଦିନ ଗାଈ ଚରେଇବାକୁ ବଣକୁ ଯାଆନ୍ତି। ବଣରେ ଦିନେ ଚାଲୁ ଚାଲୁ ସେ କୂଅରେ ପଡିଗଲେ। କୂଅରେ ପଡି ବିକଳରେ ଚିତ୍କାର କରିବାକୁ ଲାଗିଲେ। ଗାଁ ଲୋକେ ଆସି ତାଙ୍କୁ ସାହାଯ୍ୟ କରିବାପାଇଁ ଯେତେ ଚାହିଁଲେ ସେ କାହାରି ସାହାଯ୍ୟ ନେବାକୁ ମନା କରିଦେଲେ। ଗାଁ ଲୋକଙ୍କୁ ସେ କହିଲେ- 'ମତେ ଯେ କୂଅରେ ପକେଇଛି ସେ ନ ଆସିବା ପର୍ଯ୍ୟନ୍ତ ମୁଁ କୂଅରୁ ବାହାରିବି ନାହିଁ।' ଏହି ସମୟରେ ମହିମା ଗୋସାଇଁ ଆସି ତାଙ୍କୁ କୂଅରୁ ଉଦ୍ଧାର କରିଥିଲେ ଏବଂ ସେହିଦିନଠୁଁ ଭୀମ ଭୋଇ ଓ ମହିମା ଗୋସାଇଁଙ୍କ ଗୁରୁ-ଶିଷ୍ୟ ସଂପର୍କରେ ଶୁଭାରମ୍ଭ ହେଲା। ଏ କାହାଣୀ କେତେ ସତ୍ୟ କେତେ ମିଥ୍ୟା ଜାଣିବାର ଉପାୟ ନାହିଁ। ଏବେ ବି କନ୍ଧରା ଗାଁରେ ସେ କୂଅ ରହିଛି, କୂଅକୁ ଭୀମ ଭୋଇଙ୍କ ସ୍ମୃତିରେ ଗାଁ ଲୋକ ଏକ ସ୍ମୃତିପୀଠ ରୂପେ ଗଢି ତୋଳିଛନ୍ତି।

## ମହିମା ଧର୍ମ :

ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ମହିମା ଧର୍ମର ଉତ୍‌ଥାନ ଓଡ଼ିଶାର ସାମାଜିକ ଏବଂ ଧାର୍ମିକ ଜୀବନରେ ଏକ ନୂତନ ତରଙ୍ଗ ସୃଷ୍ଟି କରିଥିଲା। ଓଡ଼ିଶା ମଧ୍ୟାଞ୍ଚଳ ଗଡଜାତ ବିଭାଗର ଷଷ୍ଠାଂଶ ଲୋକ, ବିଶେଷ କରି କୃଷକ ଓ ଇତର ଜାତିର ଲୋକ ଏହି ଧର୍ମରେ ଦୀକ୍ଷିତ ହୋଇଥିଲେ। ଯାଜପୁରରୁ ସମ୍ବଲପୁର ପର୍ଯ୍ୟନ୍ତ ମହିମା ସ୍ୱାମୀଙ୍କ ଭକ୍ତମାନେ ଭରି ଯାଇଥିଲେ। ମହିମାସ୍ୱାମୀ ଏବଂ ଭୀମ ଭୋଇଙ୍କ ନେତୃତ୍ୱରେ ମହିମାଧର୍ମର ପ୍ରଚାର ପ୍ରସାର ସେହି ସମୟର ଉଚ୍ଚଜାତି ତଥା ରକ୍ଷଣଶୀଳ ହିନ୍ଦୁମାନଙ୍କ ଭିତରେ ଏକ ପ୍ରକାର ଆତଙ୍କ ଖେଳାଇ ଦେଇଥିଲା। ଫଳତଃ ସେ ସମୟରେ ପ୍ରକାଶିତ ପତ୍ର ପତ୍ରିକାମାନଙ୍କରେ ମହିମା ଧର୍ମ, ମହିମା ସ୍ୱାମୀ ଓ ଭୀମ ଭୋଇଙ୍କ ବିଷୟରେ ବିରୂପ ମନ୍ତବ୍ୟ ପ୍ରଦାନ କରି ଅନେକ ଲେଖା ପ୍ରକାଶିତ ହୋଇଥିଲା। ଜଣେ ଭକ୍ତ ଫଳାହାରୀ ବାବାର ଚକ୍ରାନ୍ତରେ ଅନେକ ଲୋକ ଗୃହାନ୍ତରୀ ହୋଇ ସମାଜକୁ ଭ୍ରଷ୍ଟ କରୁଥିବାର ଆରୋପ ସହ ଏହି ବାବାଜୀକୁ ସରକାର ଦଣ୍ଡ ଦିଅନ୍ତୁ ବୋଲି ଦାବି ମଧ୍ୟ ଉପସ୍ଥାପନ କରାଯାଇଥିଲା। ଲୋକଙ୍କ ଦାବି ମତେ ତତ୍କାଳୀନ ବ୍ରିଟିଶ ସରକାର ଏମାନଙ୍କ ଉପରେ ଦୃଷ୍ଟି ରଖିବାକୁ ଜିଲ୍ଲା ମାଜିଷ୍ଟ୍ରେଟମାନଙ୍କୁ ଦାୟିତ୍ୱ ଅର୍ପଣ କରିଥିଲେ। ମୁଖ୍ୟତଃ ସମାଜର ଦଳିତବର୍ଗଙ୍କ

ମଧ୍ୟରେ ମହିମା ଧର୍ମ ଏକ ନୂତନ ବିଦ୍ରୋହର ସୂତ୍ରପାତ କରିଥିଲା । ସମାଜର ଅବହେଳିତ ଅସ୍ପୃଶ୍ୟ ଶ୍ରେଣୀ ଓ ସ୍ତ୍ରୀଲୋକେ ଏଥିରେ ସାମିଲ୍ ହୋଇ ବ୍ରାହ୍ମଣ-ବାଦୀ ମୂଳ ହିନ୍ଦୁ ଧର୍ମ ବିରୋଧରେ ସ୍ୱର ଟୋଳିଥିଲେ । ଏମାନଙ୍କ ଆଚାର ଓ ଆଚରଣ ବ୍ରାହ୍ମଣମାନଙ୍କର ଆଖିକୁ ବିଧର୍ମୀ ଓ ରାଜଦ୍ରୋହୀ ଦେଖାଯିବା ସ୍ୱାଭାବିକ ।

'ଛତିଶକୁଳ ବାଉନ ଯେ ପାଟକ ଯେ ଅଛ ସ୍ତିରୀ ପୁରୁଷ

ଉଚ୍ଚନୀଚ ବୋଲି ବାରଣ ନ କରି ନାମରେ ଶରଣ ପଶ ।।'

ଭୀମ ଭୋଇଙ୍କର ଏଇ ଆବାହନ ସେତେବେଳେ ସମଗ୍ର ଓଡ଼ିଶାର ନରନାରୀଙ୍କୁ ବାଇଆ କରିଥିଲା । (କୁଆଡୁ ଆଇଲେ କୁମ୍ଭିପଟିଆ, ସ୍ତ୍ରୀ-ପୁରୁଷଙ୍କୁ କଲେ ବାଇଆ) । ଧର୍ମର ଦାଣ୍ଡ ଯୋଉମାନଙ୍କୁ ମନାଥିଲା ସେମାନଙ୍କ ପାଇଁ ଏକ ଅବାଧ ବଡଦାଣ୍ଡ ଖୋଲିଗଲା ମହିମା ଧର୍ମ ମାଧ୍ୟମରେ । ମହିମା ସ୍ୱାମୀଙ୍କର ଅଲୌକିକ ମହିମା ଶୃତି ମାଧ୍ୟମରେ ଗାଁ ଗାଁରେ ପ୍ରଚାର କରିବାର ନାୟକ ଥିଲେ ଭୀମ ଭୋଇ ।

ମହିମା ଧର୍ମ ସଂପର୍କରେ ପ୍ରଥମ ସରକାରୀ ଦଲିଲ୍ ଆମେ ପାଇଥାଉ ୧୮୮୧ ମସିହାରେ । ତେବେ ଜୁନ୍ ୧, ୧୮୬୭ ଦିନୁ 'ଉତ୍କଳ ଦୀପିକା'ରେ ଏକ ନୂତନ ଧର୍ମର ଆବିର୍ଭାବ ସଂପର୍କରେ ସୂଚନା ମିଳିଥିଲା । ସେହିପରି ଅଗଷ୍ଟ ୨୦,୧୮୭୧ରେ ଦୀପିକାର 'ସମ୍ପାଦକଙ୍କୁ ପତ୍ର' ସ୍ତମ୍ଭରେ ଜଣେ ଅନାମଧେୟ ପତ୍ର ଲେଖକ ଅତ୍ୟନ୍ତ ବ୍ୟଥିତ ଭାବରେ ସହସ୍ରାଧିକ ବ୍ୟକ୍ତି ଜଣେ ଫଳାହାରୀ ବୈଷ୍ଣବର ପ୍ରେରଣାରେ କୁମ୍ଭିପଟ ଧର୍ମ ଗ୍ରହଣ କରୁଥିବାରୁ ଉଦ୍‌ବେଗ ପ୍ରକାଶ କରିଥିଲେ ।

ଉପରୋକ୍ତ ପତ୍ରର ଉତ୍ତରରେ ଦୀପିକାର ସମ୍ପାଦକ ୨୬, ଅଗଷ୍ଟ ୧୮୭୧ ଦିନ ଏକ ଟିପ୍ପଣୀ ଦେଇ ଲେଖିଥିଲେ ଯେ 'ଆମ୍ଭେମାନେ ଅବଗତ ହୋଇଛୁ ଯେ, ଏ ପ୍ରକାର ଲୋକଙ୍କ ଉପରେ ଦୃଷ୍ଟି ରଖିବା ପାଇଁ ଶ୍ରୀଯୁକ୍ତ କମିଶନର ସାହେବ ଜିଲ୍ଲାର ମାଜିଷ୍ଟ୍ରେଟ୍‌ଙ୍କୁ ଆଜ୍ଞା ଦେଇ ଅଛନ୍ତି । ତେଣୁ ସରକାରଙ୍କ ଦୃଷ୍ଟିରେ ମହିମା ଧର୍ମକୁ Hindu Dissenters ବୋଲି ଅବିହିତ କରିବା ଲାଗି ଉଚ୍ଚ ଜାତି ତଥା ଶିକ୍ଷିତ ବର୍ଗର ବିଧିବଦ୍ଧ ଯୋଜନା ଦୀପିକା ମାଧ୍ୟମରେ ଚାଲୁ ରହିଥିଲା । ୧୮୮୧ ମସିହାର ପୁରୀ ମନ୍ଦିର ଆକ୍ରମଣ ଘଟଣା ଏହି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥିଲା । ଫଳରେ କମ୍ପାନୀ ସରକାର ବାଙ୍କୀ, ଅନୁଗୁଳ, ଢେଙ୍କାନାଳ ପ୍ରଭୃତି ସ୍ଥାନରୁ ଏ ସଂପର୍କରେ ରିପୋର୍ଟମାନ ତଲବ କରିଥିଲେ । ଅଗଷ୍ଟ ୧୨, ୧୮୮୧ରେ ଅନୁଗୁଳ ତହସିଲଦାରଙ୍କ ରିପୋର୍ଟ, ଅକ୍ଟୋବର ୮ ୧୮୮୧ରେ ଢେଙ୍କାନାଳ ମ୍ୟାନେଜର ବାବୁ ବନମାଳୀ ସିଂଙ୍କ ରିପୋର୍ଟ, ସମ୍ବଲପୁରର ଡେପୁଟି କମିଶନରଙ୍କ ଚିଠି ନଂ ୧୧୪୫/ ତା ଅପ୍ରେଲ ୧, ୧୮୮୧

ଏବଂ ବାଙ୍କୀ ତହସିଲଦାରଙ୍କ ଅଗଷ୍ଟ ୬, ୧୮୮୧ ରିପୋର୍ଟରେ ମହିମା ବା କୁମ୍ଭୀପଟିଆ ଧର୍ମ ତଥା ଏହାର ପ୍ରତିଷ୍ଠାତା ମହିମା ସ୍ୱାମୀଙ୍କ ବିଷୟରେ ବିବରଣୀମାନେ ପ୍ରକାଶ ପାଇଲା। ଏହି ସମସ୍ତ ରିପୋର୍ଟକୁ ଆଧାର କରି ୧୮୮୨ ମସିହାରେ Proceedings of the Asiatic Society of Bengalରେ Origin and growth of the Hindu dissenters who profess to be the followers Alekh ଶୀର୍ଷକରେ ଏକ ବିବରଣୀ ପ୍ରକାଶ ପାଇଥିଲା।

ମହିମା ଧର୍ମର ପ୍ରତିଷ୍ଠାତାଙ୍କ ନାମ ମୁକୁନ୍ଦ ଦାସ ବୋଲି ଉପରୋକ୍ତ ବିବରଣୀରେ ସୁସ୍ପଷ୍ଟ ଉଲ୍ଲେଖ କରାଯାଇଛି। ଢେଙ୍କାନାଳ ମ୍ୟାନେଜର ବାବୁ ବନମାଳୀ ସିଂ ମହିମା ସ୍ୱାମୀ ଓରଫ୍ ମୁକୁନ୍ଦ ଦାସଙ୍କ ସହ ୧୮୭୪ ମସିହାରେ ବିଭିନ୍ନ ସ୍ଥାନକୁ ଏକତ୍ର ଟୁର୍‌ରେ ଯାଇଥିବା କଥା କହିଛନ୍ତି। ଏହି ତଥ୍ୟକୁ ଭିନ୍ନ ଭିନ୍ନ ସମୟରେ ଅସ୍ୱୀକାର କରିବାର ପ୍ରୟାସ କରାଯାଇଛି। ବିଶେଷ କରି ବିଶ୍ୱନାଥ ବାବା ମୁକୁନ୍ଦ ଦାସଙ୍କୁ ମହିମା ସ୍ୱାମୀଙ୍କ ଜଣେ ଶିଷ୍ୟ ଯିଏକି ମହିମା ସ୍ୱାମୀ ଓ ସରକାରଙ୍କ ମଧ୍ୟରେ ଯୋଗସୂତ୍ର ରକ୍ଷା କରୁଥିଲେ ବୋଲି କହିଛନ୍ତି। Census of Mayurbhanj by Mohammad Laeequddin ରେ ମଧ୍ୟ ମହିମାସ୍ୱାମୀଙ୍କୁ ମୁକୁନ୍ଦ ଦାସ ଭାବରେ ଚିହ୍ନଟ କରାଯାଇଛି। ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଢେଙ୍କାନାଳସ୍ଥ କପିଳାସ କ୍ଷେତ୍ରରେ ସେ ତାଙ୍କର ସାଧନା କରିଥିଲେ। ୧୨ ବର୍ଷ ଧରି ଫଳାହାର, ତା'ପରେ କ୍ଷୀରାହାର କରି ସେ ତାଙ୍କର ସାଧନା ଅବ୍ୟାହତ ରଖିଥିବାରୁ କେହି କେହି ତାଙ୍କୁ ଫଳାହାରୀ ଏବଂ କ୍ଷୀର-ନୀରପାୟୀ ବୋଲି ଡାକୁଥିଲେ। "ତାଙ୍କର କପିଳାସ ଅବସ୍ଥାନ କାଳରେ ମହାରାଜ ଭଗୀରଥଙ୍କର ପଟ୍ଟମହିଷୀ ତାଙ୍କୁ କୌଣସି ବିଶେଷ କାମନାରେ ପ୍ରାୟ ଦଶାଧିକ ବର୍ଷ ଦୁଗ୍ଧ ଯୋଗାଣ କରିଥିଲେ। ବିଶ୍ୱନାଥ ବାବା ତାଙ୍କର 'ମହିମା ଧର୍ମର ଇତିହାସ'ରେ ୧୮୨୬ ମସିହାରେ ପ୍ରଥମେ ମହିମା ସ୍ୱାମୀ ପୁରୀରେ 'ଧୂଳିଆ ଗୋସାଇଁ' ଭାବେ ଆବିର୍ଭୂତ ହୋଇଥିଲେ ବୋଲି କହିଛନ୍ତି। ପୁରୀରୁ ୧୮୩୮ ମସିହାରେ ସେ କପିଳାସକୁ ଆସି ତାଙ୍କର ଲୀଳା ପ୍ରଦର୍ଶନ କଲେ। କିନ୍ତୁ Asiatic Society of Bengal Proceedings ଅନୁଯାୟୀ କପିଳାସରୁ ସେ ପୁରୀ ଆସିଥିଲେ ଏବଂ ଲୋକନାଥ ମନ୍ଦିର ନିକଟରେ ଏକ କୁଡିଆ କରି ରହିଥିଲେ। ସେଠାରୁ ଦାରୁଠେଙ୍ଗ, ଖୁଣ୍ଟୁଣୀ, ମାଳବିହାରପୁର ଇତ୍ୟାଦି ଅଞ୍ଚଳରେ ସେ ତାଙ୍କର ନୂତନ ଧର୍ମ ପ୍ରଚାର କରିଥିଲେ। ସମ୍ବଲପୁର ସମେତ ଅନ୍ୟାନ୍ୟ ପଶ୍ଚିମାଞ୍ଚଳ ଗଡଜାତରେ ମଧ୍ୟ ଏହି ନୂତନ ଧର୍ମ ପ୍ରସାର ଲାଭ କରିଥିଲା। ୧୮୬୬ର ନ'ଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ସାମାଜିକ ଜୀବନକୁ ବିପର୍ଯ୍ୟସ୍ତ କରିପକାଇଥିଲା। ଅନାହାର ପୀଡିତ ଓଡ଼ିଆଙ୍କ ଭିତରେ ଏକ

ନବଜାଗରଣର ସୂତ୍ରପାତ କଲେ ମହିମା ସ୍ୱାମୀ। ଭୋକିଲା ପେଟକୁ ଦାନା ଦେବାର ପ୍ରୟାସରୁ ଏହି ଜାଗରଣ ଆରମ୍ଭ ହୋଇଥିଲା। 'ମହିମା ମହାପ୍ରସାଦ ଉତ୍ସବ' ମାନ ଆୟୋଜନ କରାଯାଇ ହଜାର ହଜାର ବୁଭୁକ୍ଷୁ ଜନତାଙ୍କୁ ଖାଦ୍ୟ ପରଶି ପାରିବାର ଦକ୍ଷତା ତାଙ୍କୁ ଜନପ୍ରିୟ କରିପାରିଥିଲା। ଏ ସମ୍ପର୍କରେ ବାଙ୍କୀ ତହସିଲଦାର ତାଙ୍କର ୬ ଅଗଷ୍ଟ ୧୮୮୧ ରିପୋର୍ଟରେ ଲେଖିଛନ୍ତି 'xx At Khuntuni in Killah Athgarh, there he gave a great feast and attracted the general faith and worship of the common people and the reputation of his excellencies spread far and wide." ୧୮୬୦ ରୁ ୧୮୭୦ ମଧ୍ୟରେ ଡମଣା, ଦାରୁଠେଙ୍ଗ, ମାଳବିହାରପୁର, ଖୁଣ୍ଟୁଣୀ, ଜକା, ବଉଳପୁର, ପଟିଆ ଇତ୍ୟାଦି ଗ୍ରାମମାନଙ୍କରେ ନିଜର ଟୁଙ୍ଗୀ ସ୍ଥାପନା କରି ମହିମା ସ୍ୱାମୀ ତାଙ୍କ ଧର୍ମର ପ୍ରଭୂତ୍ୱ ବିସ୍ତାର କରିଥିଲେ।

ମହିମା ସ୍ୱାମୀଙ୍କ ପ୍ରଥମ ଶିଷ୍ୟମାନଙ୍କ ସଂପର୍କରେ ବାଙ୍କୀ ତହସିଲ୍‌ଦାରଙ୍କ ମତ ହେଉଛି- "At Darutheng he first deified, and entitled and renowned as Mahima Gosain's orders, disciples Narsingh Das of Killah Baud, Bhogaban Das of Brahmanabasti In P.S. Sailo in Zilla Cuttack and Krushna Das and Bhoig Das of Andharua and Madhav Das, Krupasindhu Das and Achtutananda Das of Daruthenga in Killah Khorda."

ତେବେ ଉକ୍ତ ରିପୋର୍ଟରେ ମହିମା ସ୍ୱାମୀଙ୍କ ଦୁଇ ମୁଖ୍ୟ ଶିଷ୍ୟ ଗୋବିନ୍ଦ ଦାସ ବାବା ଏବଂ ଭୀମ ଭୋଇଙ୍କ ବିଷୟରେ କିଛି ଉଲ୍ଲେଖ କରାଯାଇନାହିଁ। ବୌଦ୍ଧର ନରସିଂହ ଦାସ ବୋଲି ଗୋବିନ୍ଦ ବାବାଙ୍କ କଥା ହିଁ କୁହାଯାଇଛି। ମହିମା ସ୍ୱାମୀଙ୍କର ପ୍ରଥମ ଶିଷ୍ୟ ବା ଆଦିସିଦ୍ଧ ଗୋବିନ୍ଦ ଦାସ ବାବା ବୌଦ୍ଧ ଜିଲ୍ଲାର ବଲାସିଂଘା ଗ୍ରାମରେ ଆଶ୍ରମ ସ୍ଥାପନା କରି ରହିଥିଲେ। ଭୀମ ଭୋଇ ତାଙ୍କର 'ନିର୍ବେଦ ସାଧନ'ରେ ଗୋବିନ୍ଦ ଦାସଙ୍କର ମହିମା ଧର୍ମ ପ୍ରବେଶର ସବିଶେଷ କାବ୍ୟିକ ବିବରଣୀ ରଚନା କରିଛନ୍ତି। ତେବେ ଗୋବିନ୍ଦ ବାବା, ନୃସିଂହ ବାବା ଏବଂ ଭୀମ ଭୋଇ ଏହି ତିନି ଜଣ ଥିଲେ ମହିମା ଗୋସାଇଁଙ୍କ ପ୍ରଧାନ ସେନାପତି।

ମହିମା ସ୍ୱାମୀଙ୍କ ଜୀବନକାଳ ବହୁ ବାଦ-ବିସମ୍ବାଦ ଭରା। ତାଙ୍କ ଜନ୍ମ ଓ ଜୀବନ ସଂପର୍କରେ ପ୍ରାୟତଃ କୌଣସି ଐତିହାସିକ ସୂଚନା ଏପର୍ଯ୍ୟନ୍ତ ମିଳିନାହିଁ। ଭୀମ ଭୋଇଙ୍କ ଦ୍ୱାରା ଚାରି ଭାଗରେ ରଚିତ 'ମହିମା ବିନୋଦ'ର ଅପ୍ରକାଶିତ ପାଣ୍ଡୁଲିପିରେ ତାଙ୍କୁ

ଜଣେ ପଣ୍ଡିମା ବ୍ରାହ୍ମଣ ବୋଲି କୁହାଯାଇଛି। ତାଙ୍କ ପିତାଙ୍କ ନାମ ଅନନ୍ତ ମିଶ୍ର ଏବଂ ମାତାଙ୍କ ନାମ ସତ୍ୟବତୀ ତଥା ଅନନ୍ତ ପାଟଣା ତାଙ୍କ ଘର। ଏ ପର୍ଯ୍ୟନ୍ତ ମୁଁ ସଂଗ୍ରହ କରିଥିବା ମହିମା ବିନୋଦର ଦ୍ୱିତୀୟ ଓ ତୃତୀୟ ଖଣ୍ଡର ପାଣ୍ଡୁଲିପିରେ ମହିମା ସ୍ୱାମୀଙ୍କ ଧରାପୃଷ୍ଠରେ ଅବତରଣ, ତୀର୍ଥାଟନ ତଥା ଓଡ଼ିଶାର ଗାଁ ଗହଳରେ ଧର୍ମ ପ୍ରଚାରର ସବିଶେଷ ବିବରଣୀ ପ୍ରଦାନ କରାଯାଇଛି। ଓଡ଼ିଆ ଜନଜୀବନରେ ଏକ ନୂତନ ଧର୍ମଧାରାର ପ୍ରଚଳନ ଆରମ୍ଭ କରି ଜାତିଭେଦ, ପୌତ୍ତଳିକତା, କର୍ମକାଣ୍ଡ ତଥା ଆରଣ୍ୟକ ସନ୍ୟାସପନ୍ଥୀ ବିରୋଧରେ ସ୍ୱର ଉତ୍ତୋଳନ କରିଥିବାରୁ ତାଙ୍କୁ ଅନେକଙ୍କର ଚକ୍ଷୁ ଶୂଳ ହେବାକୁ ପଡିଥିଲା। ତାଙ୍କ ଜୀବନଦଶାରେ ମହିମା ଧର୍ମ ଭିତରେ ଅସନ୍ତୋଷ ଏବଂ ଗୋଷ୍ଠୀ ବିବାଦର ସୂତ୍ରପାତ ହୋଇଥିଲା। ଗୋବିନ୍ଦ ଦାସ ବାବା ଦାରୁଠେଙ୍ଗରେ ମୃତ୍ୟୁବରଣ କଲାପରେ ୧୮୭୩ରେ ମାଳବିହାରପୁରରେ ଏକ ଭୟଙ୍କର ଦଙ୍ଗାର ସୂତ୍ରପାତ ହେଲା। ବାଙ୍କୀ ତହସିଲଦାର ଏ ସଂକ୍ରାନ୍ତରେ ଲେଖିଛନ୍ତି, "About 1873 Kumbhipat got Mad, committed homicide and transported for life and Narsingh Das having abuted the offence was imprisoned for a year in Cuttack jail." ଏହି ଘଟଣା ସଂପର୍କରେ ୩ ସେପ୍ଟେମ୍ବର, ୧୮୭୩ ମସିହାରେ ରଞ୍ଜାଗୋଳ ଗ୍ରାମରେ କେତେକ ଯୁବତୀ ସ୍ତ୍ରୀ ଅର୍ଘ୍ୟ ଦେଇ ବନ୍ଦାପନା କରିଥିବାରୁ ଏବଂ କେତେକ ସ୍ତ୍ରୀଲୋକ ସନ୍ୟାସିନୀ ହୋଇ ଗୃହରୁ ଚାଲି ଯାଇଥିବାରୁ ଓଡ଼ିଶାର ତଦାନୀନ୍ତନ କମିଶନର ରେଭେନ୍‌ସା ସାହେବଙ୍କ ନିକଟରେ ଅଭିଯୋଗ ଦାଖଲ ହୋଇଥିଲା।

ତେବେ ମହିମାଧର୍ମ ଉନ୍ନବିଂଶ ଶତାବ୍ଦୀର ଓଡ଼ିଶାରେ ଏକ ନବଜାଗରଣର ସୂତ୍ରପାତ କରିଥିଲା। ପ୍ରତିମା ପୂଜାର ବିରୋଧ, ଜାତିମୁକ୍ତ ସମାଜ ଗଠନ, ସମ୍ଭ୍ରାନ୍ତ ଓ ରାଜନ୍ୟ ବର୍ଗଙ୍କ ବିରୋଧରେ ବିଦ୍ରୋହ ଏବଂ ସର୍ବୋପରି ସ୍ୱାଧୀନତା ଓ ସମାନତାର ଚିନ୍ତା-ପ୍ରସାର ମହିମା ଧର୍ମକୁ ବେଶ୍ ଲୋକପ୍ରିୟ କରିପାରିଥିଲା। ସମାଜର ଦଳିତ ଓ ଅବହେଳିତ ଜାତିର ଲୋକମାନେ ଏହି ଧର୍ମ ପ୍ରତି ବେଶି ପରିମାଣରେ ଆକୃଷ୍ଟ ହୋଇଥିଲେ। ମହିମା ଗୋସାଇଁ, ତାଙ୍କର ପ୍ରଥମ ଶିଷ୍ୟ ଗୋବିନ୍ଦ ବାବା ଏବଂ ଭୀମ ଭୋଇଙ୍କ ନେତୃତ୍ୱରେ ଓଡ଼ିଶାରେ ଏକ ନବଜାଗରଣ ପର୍ବ ଆରମ୍ଭ ହୋଇଥିଲା।

**ମହିମା ଧର୍ମ ଓ ଭୀମ ଭୋଇଙ୍କ ଭୂମିକା**

ପୂର୍ବରୁ ଭୀମ ଭୋଇଙ୍କର କୂଅରେ ପଡିବା ଓ ତାଙ୍କୁ ମହିମା ଗୋସାଇଁ ଉଦ୍ଧାର କରିବାର ସୂଚନା ଅଛି। ଏହା ହିଁ ଥିଲା 'ମଣିକାଞ୍ଚନ'ର ସଂଯୋଗ। ମହିମା ଗୋସାଇଁଙ୍କୁ ଭୀମ ଭୋଇ ଈଶ୍ୱରଙ୍କର ସାକ୍ଷାତ ଅବତାର ଏବଂ ତାଙ୍କରି ଆଦେଶରେ ହିଁ କଳିଯୁଗ

ଶେଷ ହେବାକୁ ଯାଉଛି ବୋଲି ଘୋଷଣା କରିଥିଲେ। ତାଙ୍କ ଭିତରେ ରହିଥିବା କବିତ୍ୱ ଶକ୍ତିର ବିକାଶ ଘଟିଥିଲା ମହିମା ଗୋସାଇଁଙ୍କ ଆଧ୍ୟାତ୍ମିକ ସ୍ପର୍ଶରେ। ପିଲାଦିନୁ ଭାଗବତ ଶୁଣି ଶୁଣି ତାଙ୍କ ଭିତରେ କବିତ୍ୱର ସ୍ଫୁରଣ ଆରମ୍ଭ ହୋଇଥିଲା ବୋଲି କାଙ୍କଣପଡା ଗାଁର ଗଉଁନ୍ତିଆ ଚୈତନ୍ୟ ପ୍ରଧାନ କହନ୍ତି। ଏହି ସମୟରେ ପଶ୍ଚିମାଞ୍ଚଳର ଗୁଡାଏ ଲୋକଗୀତ ଯଥା ଡାଲ୍‌ଖାଇ, ମାଇଲାଜଡ, ରସରକେଲି, ଜାଇଫୁଲ ଇତ୍ୟାଦି ସେ ରଚନା କରୁଥିଲେ ଏବଂ ସୁଲଳିତ କଣ୍ଠରେ ଗାନ କରୁଥିଲେ। ରାଧାକୃଷ୍ଣଙ୍କ ଅପ୍ରାକୃତ ପ୍ରେମଲୀଳାର ବର୍ଣ୍ଣନା ଥିଲା ଏସବୁ କବିତାର ବିଷୟବସ୍ତୁ। ମହିମା ଗୋସାଇଁଙ୍କ ସ୍ପର୍ଶ ତାଙ୍କୁ ଅନୁପମ ବିଭୂତିସମ୍ପନ୍ନ କଲା। କୁହାଯାଏ, ମହିମା ଗୋସାଇଁ ତାଙ୍କୁ ଦୁଇଜଣ ବ୍ରାହ୍ମଣ ଲେଖନକାର ପ୍ରଦାନ କରିଥିଲେ। ସେମାନେ ଥିଲେ ବରଗଡ ଜିଲ୍ଲା ବନହର ଗାଁର ବ୍ରାହ୍ମଣ ହରି ପଣ୍ଡା ଓ ବସୁ ପଣ୍ଡା। ଭୀମ ଭୋଇଙ୍କର ରଚନାବଳୀକୁ ଲିପିବଦ୍ଧ କରିବା ଓ ତା'ର ପ୍ରଚାର ପ୍ରସାର ଏବଂ ସଂରକ୍ଷଣ ବ୍ୟବସ୍ଥା ଥିଲା ଏମାନଙ୍କର ଦାୟିତ୍ୱ। ଯଦିଓ ମହିମା ଗୋସାଇଁ ସେମାନଙ୍କୁ ଭୀମ ଭୋଇଙ୍କ ନିକଟକୁ ପ୍ରେରଣ କରିଥିଲେ ବୋଲି ଜନଶୃତି ରହିଛି, କିନ୍ତୁ ଜୀବନ ତମାମ ପଣ୍ଡା ଦୁଇ ଭାଇ ଭୀମ ଭୋଇଙ୍କୁ ନିଜର ଗୁରୁ ରୂପରେ ସ୍ୱୀକାର କରି ତାଙ୍କ ପାଖେ ପାଖେ ରହିଥିଲେ।

ଜଣେ କନ୍ଧ ବ୍ରାହ୍ମଣର ସେବା ଗ୍ରହଣ କରୁଥିବାରୁ ରେଢାଖୋଲ ରାଜା କ୍ରୋଧିତ ହୋଇ ଭୀମ ଭୋଇଙ୍କୁ ଦଣ୍ଡିତ କରିଥିଲେ ଓ ତାଙ୍କ ରାଜ୍ୟରୁ ନିର୍ବାସିତ କରିଥିଲେ। ରେଢାଖୋଲରୁ ଭୀମ ଭୋଇ ସୋନପୁର ଗଡଜାତର ବିନିକାରେ କିଛିକାଳ ନିଜର ଆଶ୍ରମ ସ୍ଥାପନ କରି ରହିଥିଲେ। ବିନିକା ନିକଟସ୍ଥ ଗୁଲୁଣ୍ଡା ଗାଁରେ ତାଙ୍କର ଏକ ବିରାଟ ଆଶ୍ରମ ଗଢି ଉଠିଲା। ଭୀମ ଭୋଇଙ୍କର ଅଲୌକିକ ବ୍ୟକ୍ତିତ୍ୱର ପ୍ରଭାବ ହଜାର ହଜାର ମଣିଷଙ୍କୁ ଆକୃଷ୍ଟ କରିବା ଆରମ୍ଭ କରିଥିଲା। ମହିମା ଧର୍ମ ଭିତରେ ମଧ୍ୟ ଭୀମ ଭୋଇଙ୍କ ନେତୃତ୍ୱକୁ ଅସ୍ୱୀକାର କରିବା ପ୍ରକ୍ରିୟା ଆରମ୍ଭ ହୋଇ ସାରିଥିଲା।

ମଡି ବା ଆଧୁନିକ କାମାକ୍ଷାନଗର ଗ୍ରାମର ବ୍ରାହ୍ମଣୀ କନ୍ୟା ଅନ୍ନପୂର୍ଣ୍ଣା ଭୀମ ଭୋଇଙ୍କ ଶିଷ୍ୟତ୍ୱ ଗ୍ରହଣ କରିବା ପାଇଁ ଗୁଲୁଣ୍ଡା ଗାଁରେ ଆସି ପହଂଚିଲେ। ଅନ୍ନପୂର୍ଣ୍ଣା ଓ ଭୀମ ଭୋଇଙ୍କ ସଂପର୍କକୁ ବରଦାସ୍ତ କରିପାରିଲେ ନାହିଁ ମହିମା ଧର୍ମର ସନ୍ୟାସୀମାନେ। ସେମାନେ ଗୁଲୁଣ୍ଡା ଗାଁରେ ଭୀମ ଭୋଇଙ୍କୁ ଆକ୍ରମଣ କରି ତାଙ୍କ ଆଶ୍ରମକୁ ଭାଙ୍ଗି ପକେଇଲେ। ଭୀମ ଭୋଇ କୌଣସି ପ୍ରତିବାଦ ନକରି ଗୁଲୁଣ୍ଡାରୁ ଭୁର୍ଷାପାଲି ବାଟ ଦେଇ ସୋନପୁର ନିକଟସ୍ଥ ଖଲିଆପାଲି ଗାଁରେ ଆଶ୍ରମ କଲେ। ଖଲିଆପାଲି ଗାଁର ଗଉଁତିଆ ତାଙ୍କ ପାଇଁ ଜମି ଓ ଡିହ ଖଞ୍ଜା କରିଦେଲେ। ସମାଧିଲୀନ ହେବା ପର୍ଯ୍ୟନ୍ତ ଖଲିଆପାଲି

ହିଁ ଥିଲା ଭୀମ ଭୋଇଙ୍କ ସାଧନାର ତୀର୍ଥଭୂମି।

୧୮୭୫ (ମତଭେଦରେ ୧୮୭୬) ମସିହାରେ ମହିମା ଗୋସାଇଁଙ୍କର ମୃତ୍ୟୁ ପରେ ମହିମା ଧର୍ମ ଦୁଇ ଭାଗରେ ବିଭକ୍ତ ହୋଇଗଲା। ଆନୁଷ୍ଠାନିକତା ଏବଂ ଆଶ୍ରମିକ ବିଧି ବ୍ୟବସ୍ଥାକୁ ନେଇ 'କୁମ୍ଭିପଟ' ଏବଂ 'କନାପଟ' ଗୋଷ୍ଠୀ ଭାବରେ ଗଠିତ ହେଲା। ଭୀମ ଭୋଇ କୌଣସି ପକ୍ଷ ଗ୍ରହଣ ନକରି ଖଲିଆପାଲି ଗାଁରେ ନିଜ ମତବାଦର ପ୍ରଚାର ଆରମ୍ଭ କଲେ। ତାଙ୍କ କବିତା ହିଁ ଥିଲା ତାଙ୍କ ମତବାଦ। ଜଣେ କବି କବିତା ମାଧ୍ୟମରେ ହଜାର ହଜାର ଲୋକଙ୍କୁ ପ୍ରଭାବିତ କରିବା ଥିଲା ଉନବିଂଶ ଶତାବ୍ଦୀର ଓଡ଼ିଶାରେ ଏକ ବିରଳ ଘଟଣା।

ଏହି ସମୟ ଓଡ଼ିଶାର ସାମାଜିକ ଜୀବନରେ ଏକ ସନ୍ଧିକ୍ଷଣ। ଉପକୂଳ ଅଞ୍ଚଳରେ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ନବଜାଗରଣର ସୂତ୍ରପାତ ଘଟୁଥିଲା। ଆଚାର୍ଯ୍ୟ ପ୍ୟାରିମୋହନ, କୁଳବୃଦ୍ଧ ମଧୁସୂଦନ, କର୍ମବୀର ଗୌରୀଶଙ୍କର, କବିବର ରାଧାନାଥ ରାୟ, ବ୍ୟାସକବି ଫକୀର ମୋହନ ଏବଂ ସ୍ୱଭାବକବି ଗଙ୍ଗାଧର ପ୍ରମୁଖ ଓଡ଼ିଆ ଜାତିର ଅସ୍ମିତାକୁ ପୁନରୁଦ୍ଧାର ପାଇଁ ପ୍ରୟାସ ଆରମ୍ଭ କରୁଥାନ୍ତି। ଭୀମ ଭୋଇ ଥିଲେ ସେମାନଙ୍କର ସମସାମୟିକ। ଅଥଚ ଓଡ଼ିଆ ସାହିତ୍ୟର ଇତିହାସକାରମାନେ ତାଙ୍କୁ ଭଞ୍ଜ ଯୁଗର ଶେଷ କବି ଭାବରେ କେଉଁ ଯୁକ୍ତିରେ ସାମିଲ୍ କରିଛନ୍ତି ତାହା ବୁଝା ପଡେ ନାହିଁ। ବୟସ ଦୃଷ୍ଟିରୁ ରାଧାନାଥ ରାୟ (୧୮୪୮-୧୯୦୮), ଫକୀର ମୋହନ ସେନାପତି (୧୮୪୩-୧୯୧୮) ଏବଂ ମଧୁସୂଦନ ରାଓ (୧୮୫୩-୧୯୧୨)ଙ୍କ ଠାରୁ ଭୀମ ଭୋଇ (୧୮୫୦-୧୮୯୫) ବୟସରେ କନିଷ୍ଠ ଏବଂ ସେମାନଙ୍କର ବହୁ ପୂର୍ବରୁ ମୃତ୍ୟୁବରଣ କରିଥିଲେ। କେଉଁ କାରଣରୁ ତାଙ୍କୁ ଓଡ଼ିଆ ନବଜାଗରଣର ଇତିହାସରେ ଜଡିତ କରାଯାଇ ନାହିଁ, ତାହା କେବଳ ଐତିହାସିକମାନେ ହିଁ କହିପାରିବେ।

ଏହି ସମୟ ଖଣ୍ଡରେ ଭୀମ ଭୋଇଙ୍କ କବିତା ଓ ଜୀବନ ଥିଲା ପ୍ରତିବାଦର ଆଗ୍ନେୟ ଉଚ୍ଚାରଣ। ରେଢାଖୋଲ ରାଜା ଏବଂ ସୋନପୁର ରାଜାଙ୍କ ସହ ତାଙ୍କ ମତଭେଦର ଏକ ସୁଦୀର୍ଘ ଇତିହାସ ରହିଛି। ସେଥିପାଇଁ ସେ ଲେଖିଥିଲେ-

'କାହାରି ଅଧୀନେ ନ ଥାଉଟି ଆମେ ଶ୍ରୀଗୁରୁ ଅଧୀନେ ଥାଉ
କାହାରି ଆଜ୍ଞା ଶିର ପରେ ନବହୁ ଗୁରୁ ଆଜ୍ଞା ହେଲେ ଯାଉ।
ରାଜାର ପରଜା ନୋହୁଁ ସିନା ଆମ୍ଭେ ନୋହୁ ସାହୁର ଖାତକ
ଯହିଁ ଗୁରୁ ନେବେ ତହିଁ ଯାଉ ଆମ୍ଭେ କେ ଅବା କରୁ ଅଟକ।'

(ସ୍ତୁତି ଚିନ୍ତାମଣି, ୬୪ ବୋଲି)

"କାହାକୁ ହିଂସା କପଟ ନକରଇ ଅହଂକାର ଛନ୍ଦଭେଦ
ରାଜା ପରଜା ସମସ୍ତେ ମୋହ ସଂଗେ ଲାଗି ବସିଛନ୍ତି ବାଦ।"

(ସ୍ତୁତି ଚିନ୍ତାମଣି, ୬୨ ବୋଲି)

ତତ୍କାଳୀନ ସୋନପୁର ରାଜା ନୀଳଧର ସିଂହଦେଓ ଭୀମ ଭୋଇଙ୍କୁ ଅଗ୍ନି ପରୀକ୍ଷା ଦେବାକୁ ଆହ୍ୱାନ କରିଥିଲେ। ବ୍ରାହ୍ମଣ ହରି ପଣ୍ଡା ଓ ବସୁ ପଣ୍ଡା ତାଙ୍କର ସେବା କରୁଥିବାରୁ ଏବଂ ସେ ଜନସାଧାରଣଙ୍କ ପୂଜା ଘେନୁଥିବାରୁ ଏହା ଏକ ସାମାଜିକ ଅପରାଧ ବୋଲି ରାଜା ବିବେଚନା କରିଥିଲେ। ତାଙ୍କର ଦିବ୍ୟଶକ୍ତିର ପ୍ରମାଣ ଦିଅନ୍ତୁ ବୋଲି ରାଜା ଭୀମ ଭୋଇଙ୍କୁ ଆହ୍ୱାନ କରିଥିଲେ। ହରି ପଣ୍ଡା ଓ ବସୁ ପଣ୍ଡା ଗୁରୁଙ୍କ ତରଫରୁ ପ୍ରଥମେ ଅଗ୍ନି ପରୀକ୍ଷା ଦେବାପାଇଁ ସୋନପୁର ରାଜଧାନୀ ଅଭିମୁଖେ ଯାତ୍ରା କରିଥିଲେ। ରହସ୍ୟମୟ ଭାବରେ ଅଗ୍ନିପରୀକ୍ଷା ହେବାର ପୂର୍ବ ଦିନ ରାଜା ନୀଳାଧର ସିଂହଦେଓ ଅକସ୍ମାତ ମୃତ୍ୟୁବରଣ କଲେ। ଏହି ଘଟଣା ପରେ ପରବର୍ତ୍ତୀ ରାଜା ପ୍ରତାପରୁଦ୍ର ସିଂହଦେଓ ଭୀମ ଭୋଇଙ୍କୁ ପ୍ରଚୁର ସମ୍ମାନ ଜଣାଇଥିଲେ। ପରବର୍ତ୍ତୀ ପର୍ଯ୍ୟାୟରେ ମହାରାଜା ବୀରମିତ୍ର ସିଂହଦେଓ ଭୀମ ଭୋଇଙ୍କ ସାହିତ୍ୟର ପ୍ରସାର ପାଇଁ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ। ତାଙ୍କର ପରାମର୍ଶଦାତା ତଥା ଓଡ଼ିଶା ଇତିହାସର ଅନ୍ୟତମ ଶ୍ରେଷ୍ଠ ଗବେଷକ ବିଜୟ ଚନ୍ଦ୍ର ମଜୁମ୍‌ଦାର ଭୀମ ଭୋଇଙ୍କ କବିତାର ପ୍ରଥମ ଆଲୋଚକ ଥିଲେ।

**ଗଣମାଧ୍ୟମ ଓ ଭୀମ ଭୋଇଙ୍କ ବ୍ୟକ୍ତିତ୍ୱର ଚିତ୍ର :**

ସନ୍ଥ କବି ଭୀମ ଭୋଇଙ୍କୁ ଆମେ ଜଣେ ଅନ୍ଧ ସନ୍ୟାସୀ ମନେ କରୁ। କବି ତଥା ଆଲୋଚକ ହରପ୍ରସାଦ ଦାସ ତାଙ୍କର 'ଆଧୁନିକତା ପରମ୍ପରା' ପୁସ୍ତକରେ ଲେଖିଛନ୍ତି, "ଭୀମ ଭୋଇ ବୋଇଲେ ମୁହଁରେ ମୁହେଁ ନିଶ ଦାଢୀ, ବାଳ ନୁଖୁରା, ଜଟାମୟ କଷାୟ ବସ୍ତ୍ର ଦେହରେ, ତାଳ ପତ୍ରର ଛତାଟିଏ ହାତରେ, ଝୁଲାମୁଣିରେ ତାଳପତ୍ର ଖେଦାଏ, ଲେଖନୀଟିଏ...।" କିନ୍ତୁ ଭୀମ ଭୋଇଙ୍କ ବାସ୍ତବ ରୂପ କ'ଣ ସେୟା? ସେ ଥିଲେ ଜଣେ ସୁଠାମ, ସୁଢଳ କାୟାର ଅଧିକାରୀ। ପୂର୍ବରୁ ବ୍ରାହ୍ମଣୀ କନ୍ୟା ଅନ୍ନପୂର୍ଣ୍ଣାଙ୍କ ସହ ତାଙ୍କ ସଂପର୍କ ବିଷୟ ଆଲୋଚିତ ଖଲିଆପାଲି ଆଶ୍ରମରେ ପାଞ୍ଚଜଣ ସ୍ତ୍ରୀ ଲୋକଙ୍କ ସହ ତାଙ୍କ ସଂପର୍କର ଚର୍ଚ୍ଚା ହୋଇଥାଏ।

ଅନ୍ନପୂର୍ଣ୍ଣା ଓ ଭୀମ ଭୋଇଙ୍କ ସମାଧୀ ଏକତ୍ର ପୂଜିତ ହେଉଛି। ଭୋଗ ମଣ୍ଡପରେ ଉଭୟଙ୍କର ଯୁଗଳ କଠଉ ପଞ୍ଚ ଉପଚାରରେ ପୂଜିତ ହୁଏ। କିନ୍ତୁ ଜାଗତିକ ଭାବରେ ଅନ୍ନପୂର୍ଣ୍ଣାଙ୍କୁ ଭୀମ ଭୋଇଙ୍କ ସ୍ତ୍ରୀ ରୂପେ ଗ୍ରହଣ କରାଯାଏ ନାହିଁ। ଆଶ୍ରମରେ ରହୁଥିବା

ଅନ୍ୟ ଚାରିଜଣ ଯୁବତୀ ସୁମେଧା, ରୋହିଣୀ, ସୁବର୍ଣ୍ଣ ଏବଂ ସରସ୍ୱତୀଙ୍କ ସହ ଭୀମ ଭୋଇଙ୍କ ସଂପର୍କ ଅତ୍ୟନ୍ତ ନିବିଡ ଥିଲା ବୋଲି କୁହାଯାଏ। ୧୮୮୮ ମସିହାରେ ସୁମେଧାଙ୍କ ଗର୍ଭରୁ କପିଳେଶ୍ୱର ନାମକ ଏକ ପୁତ୍ର ସନ୍ତାନ ଏବଂ ରୋହିଣୀଙ୍କ ଗର୍ଭରୁ ଲାବଣ୍ୟବତୀ ନାମ୍ନୀ ଏକ କନ୍ୟା ସନ୍ତାନ ଭୀମ ଭୋଇଙ୍କ ଔରସରୁ ଜନ୍ମ ଗ୍ରହଣ କରିଥିଲେ। ଖଲିଆପାଲିସ୍ଥିତ ସମାଧୀ ପୀଠରେ ଆଜି ପର୍ଯ୍ୟନ୍ତ ସୁମେଧା, ସୁବର୍ଣ୍ଣ, ସରସ୍ୱତୀ, କପିଳେଶ୍ୱର, ଲାବଣ୍ୟବତୀ, ଶିଷ୍ୟ ହରି ପଣ୍ଡା ଓ ବସୁ ପଣ୍ଡାଙ୍କର ସମାଧୀ ଭକ୍ତମାନଙ୍କ ଦ୍ୱାରା ପୂଜିତ ହୋଇଥାଏ। ସେ ଯେ ଜଣେ ସଂସାରି ମଣିଷ ଏକଥା ସେ ସ୍ପଷ୍ଟ ଭାବରେ ସ୍ୱୀକାର କରିଛନ୍ତି।-

"ଘରଣୀମାନଙ୍କ ସଂଗେ ଘାଣ୍ଟି ହେଲି,
ଘୋର ବନେ ନିଶି ଅନ୍ଧାରେ
ଘୁଞ୍ଚିନପାରିଲି ସ୍ନେହକୁ ତେଜିଲି, ପଡିଲି ବିଷମ ଧନ୍ଦାରେ
ସ୍ୱାମୀ ହେ, ଘୋଟି ଯାଉଅଛି ସନ୍ତାପ
ଘଟକୁ ତେଜି ଅନ୍ତର ହେଲା ଦିନୁ
ମନକୁ ଲାଗୁଛି ବିସ୍ତାପ।"

(ଚଉତିଶା ମଧୁଚକ୍ର)

"ଧନ ଦାରାସୂତ ପାଇ ଆନନ୍ଦ ଏ ମୋର କପାଳେ ଥିଲା
ପୂର୍ବ କମାଣୀର ଫଳ ଭୁଞ୍ଜୁ ଅଛି କାହାର ବା କିସ ଗଲା ॥"

(ସ୍ତୁତି ଚିନ୍ତାମଣି)

ତେବେ ତାଙ୍କର ବ୍ୟକ୍ତିଗତ ଚରିତ୍ରକୁ ନେଇ ସେତେବେଳର ପତ୍ର ପତ୍ରିକା ଏବଂ ସରକାରୀ ରିପୋର୍ଟମାନଙ୍କରେ ବିରୂପ ମନ୍ତବ୍ୟମାନ ପ୍ରଦାନ କରାଯାଇଛି। ବିଶେଷ କରି ମାର୍ଚ୍ଚ ୧, ୧୮୮୧ରେ ସମ୍ବଲପୁରରୁ ଆସିଥିବା ଦଳେ ମହିମା ଧର୍ମୀ ଭକ୍ତଙ୍କର ଜଗନ୍ନାଥ ମନ୍ଦିର ଆକ୍ରମଣ ପରେ ମହିମା ଧର୍ମ ପ୍ରତି ସରକାର ଏବଂ ଗଣମାଧ୍ୟମର ରୋଷ ଦୃଷ୍ଟି ବଢିଥିଲା। ୨୧, ଅକ୍ଟୋବର ୧୮୮୧ ବଙ୍ଗଳା ସରକାରଙ୍କର ସଚିବ ହୋରାସିୟା କକରେଲ୍ ତାଙ୍କ ରିପୋର୍ଟର ଅଷ୍ଟମ ଅନୁଚ୍ଛେଦରେ ମହିମା ଧର୍ମର ନେତୃତ୍ୱ ନେଉଥିବା ଭୀମ ଭୋଇଙ୍କ ସଂପର୍କରେ ଅତ୍ୟନ୍ତ ଅଶାଳୀନ ମନ୍ତବ୍ୟ ପ୍ରଦାନ କରିଛନ୍ତି। ସେ ରିପୋର୍ଟ ଆଧାରରେ ୧୯-୧୧-୧୮୮୧ ଉତ୍କଳ ଦୀପିକାରେ 'କୁମ୍ଭିପଟ ବାବାଜୀ' ଶୀର୍ଷକରେ ପ୍ରକାଶ ପାଇଲା

"ଦୁଇ ବର୍ଷ ହେଲା କୁମ୍ଭିପଟିଆମାନେ ଦୁଇ ଦଳରେ ବିଭକ୍ତ ହୋଇଅଛନ୍ତି । ଭୀମ କନ୍ଧ ନାମକ ଜଣେ ବ୍ୟକ୍ତି ସେମାନଙ୍କ ଅଧିନାୟକ ଥିଲା । ସେ ଜନ୍ମାନ୍ଧ କିନ୍ତୁ ବଡ ବୁଦ୍ଧିମନ୍ତ । ସେ କିଛି ଲେଖା ପଢା କରି ନାହିଁ, କେବଳ ପରାକୃତ ମହାଭାରତ ଓ ଭାଗବତ ଶୁଣି ଗ୍ରନ୍ଥ ରଚନା କରିବାକୁ ପାରଗ ହୋଇଅଛି ଓ କେତେ ଖଣ୍ଡ ଈଶ୍ୱର ସ୍ତୋତ୍ର ଗୀତା ରଚନା କରିଅଛି ଓ ସେପରି ସୁନ୍ଦର ରଚନା ବର୍ତ୍ତମାନର ଶିକ୍ଷିତ ଲୋକଙ୍କ ଦ୍ୱାରା ହେବା ବିରଳ । କୌଣସି ସ୍ତ୍ରୀର ସହିତ ତାହାର ପାପ ପ୍ରଣୟ ହୋଇ ସେ ସ୍ତ୍ରୀ ଗର୍ଭବତୀ ହେଲାରୁ କୁମ୍ଭିପଟ ସମ୍ପ୍ରଦାୟ ଲୋକଙ୍କର ତାହା ପ୍ରତି କିଛି ବିରକ୍ତି ଜାତ ହେଲା । ତହୁଁ ସେମାନଙ୍କୁ ଭଣ୍ଡାଇ କହିଲା ଯେ ସେ ସ୍ତ୍ରୀ ଗର୍ଭରୁ ଅର୍ଜ୍ଜୁନ ଜନ୍ମ ହୋଇ ଅଲେଖ ଧର୍ମରେ ଅବିଶ୍ୱାସିମାନଙ୍କୁ ବିନଷ୍ଟ କରିବେ । ସେ ଗର୍ଭରେ କନ୍ୟାଟିଏ ଜାତ ହେଲା । ତହୁଁ ଭୀମ କନ୍ଧ କହିଲା ନିକଟରେ ମୋତେ ଈଶ୍ୱରାଦେଶ ହୋଇଅଛି ଯେ ସ୍ତ୍ରୀ ଗର୍ଭରୁ ଦେବ କନ୍ୟାଟିଏ ଜନ୍ମହୋଇ ମହିମା ବଳେ ଅବିଶ୍ୱାସୀମାନଙ୍କୁ ବିନାଶ କରିବ । କିନ୍ତୁ କେବଳ କେତେ ଦିନ ଉତ୍ତାରେ ସେ କନ୍ୟାଟି ପଞ୍ଚତ୍ୱ ପାଇଲା । ତହୁଁ ଭୀମ କହିଲା ସେ ଦେବକନ୍ୟା ଏ ପାପମୟ ପୃଥିବୀକୁ ଘୃଣା କରି ସ୍ୱର୍ଗଧାମକୁ ଗମନ କଲେ । ଯେଉଁମାନଙ୍କର କିଞ୍ଚିତ ବୁଦ୍ଧି ବିବେକ ଥିଲା ସେମାନେ ଏଥିରେ ଅବିଶ୍ୱାସ କଲେ ଓ ପୃଥକ ଦଳ ହୋଇଗଲେ । ଅବଶିଷ୍ଟମାନେ ଭୀମ ଦଳରେ ରହି ତାକୁ ଏପର୍ଯ୍ୟନ୍ତ ପୂଜା କରୁଅଛନ୍ତି । ପ୍ରତ୍ୟହ ପ୍ରାତଃକାଳେ ଗୋଟିଏ ବେଦୀ ଉପରେ ଭୀମ  ସସ୍ତ୍ରୀକ ଆସୀନ ହୁଏ ଓ ତାହାର ଶିଷ୍ୟମାନେ ବେଦୀ ପ୍ରଦକ୍ଷିଣପୂର୍ବକ ଦୁହିଁଙ୍କର ପାଦ ଦୁଗ୍ଧରେ ଧୌତ କରି ତାହା ପାନ କରନ୍ତି । ଦୁଇ ଦଳ ହେବାର ଅନ୍ୟତମ କାରଣ ଏହି ଯେ ଭୀମ କନ୍ଧ ଆପଣାକୁ ଈଶ୍ୱରଙ୍କ ଅବତାର ବୋଲି ପରିଚୟ ଦେଇଥିଲେ । ଯେଉଁମାନେ ଶ୍ରୀଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିଲେ ସେମାନେ ଚନ୍ଦ୍ରପୁର-ନିବାସୀ ଓ ଦାସରାମ ତାଙ୍କର ନେତା । ଜଗନ୍ନାଥଙ୍କୁ ପୋଡି ପକାଇଲେ ହିନ୍ଦୁମାନେ ହିନ୍ଦୁଧର୍ମର ଅଳୀକତ୍ୱ ବୁଝିପାରିବେ ଓ ସମସ୍ତେ ସତ୍ୟଧର୍ମ ଅର୍ଥାତ୍ ଅଲେଖ ଧର୍ମ ଗ୍ରହଣ କରିବେ, ଏହି ମାନସରେ ଦାସରାମ କେତେକ ଜଣ କୁମ୍ଭିପଟଧାରୀ ସଙ୍ଗେ ଘେନି ପୁରୀକୁ ଆସିଥିଲା ଓ ଅବଶେଷରେ ଦଙ୍ଗା ହଙ୍ଗାମାରେ ପ୍ରାଣ ହରାଇଲା !"

'ଦୀପିକା'ରେ ପ୍ରକାଶିତ ଏହି ସମ୍ବାଦର ଭିତ୍ତି ଅତ୍ୟନ୍ତ ଦୁର୍ବଳ । ଭୀମ ଭୋଇଙ୍କ ସହ ଅନ୍ନପୂର୍ଣ୍ଣା, ରୋହିଣୀ, ସୁମେଧା, ସୁବର୍ଣ୍ଣ ଓ ସରସ୍ୱତୀଙ୍କ ସହାବସ୍ଥାନକୁ ନେଇ ଭୁଲ ବୁଝାମଣା ରହିଥିଲା ।  କିନ୍ତୁ ତାଙ୍କ ପୁଅ-ଝିଅଙ୍କ ମୃତ୍ୟୁ ଖବର ତଥା ପାପ ଗର୍ଭ ସମ୍ବାଦଟି ମିଥ୍ୟା ଓ ଅମୂଳକ । ଭୀମଙ୍କ ପୁତ୍ର କପିଳେଶ୍ୱର ଏବଂ କନ୍ୟା ଲାବଣ୍ୟବତୀ ବହୁ ବର୍ଷ ପର୍ଯ୍ୟନ୍ତ ବଂଚିଥିଲେ ଓ ଖଲିଆପାଲି ଆଶ୍ରମର ଦାୟିତ୍ୱ ସମ୍ଭାଳିଥିଲେ । କପିଳେଶ୍ୱରଙ୍କୁ

ଶିବଙ୍କର ଅଂଶ ଅବତାର ବୋଲି ମହିମା ଧର୍ମର ଭକ୍ତମାନେ ବିଶ୍ୱାସ କରୁଥିଲେ। ସେହିପରି ତାଙ୍କର କନ୍ୟା ଲାବଣ୍ୟବତୀ ତଥିଲେ ପରମ ସୁନ୍ଦରୀ ଓ ବିଦୂଷୀ। ଲାବଣ୍ୟବତୀଙ୍କ ସୌନ୍ଦର୍ଯ୍ୟକୁ ନେଇ ଏବେ ମଧ୍ୟ ସୋନପୁର ଅଞ୍ଚଳରେ ବହୁ କାହାଣୀ ପ୍ରଚଳିତ। କୁଆଡେ ତାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ରାଜା ଓ ରାଜପୁତ୍ରମାନେ ଭୀମ ଭୋଇଙ୍କ ଶରଣାପନ୍ନ ହୋଇଥିଲେ। ଲାବଣ୍ୟବତୀ ଚିରକୁମାରୀ ବ୍ରତ ପାଳନ କରିଥିଲେ। ତାଙ୍କ ଦ୍ୱାରା ରଚିତ ଏକ ଅମୂଲ୍ୟ ଆୟୁର୍ବେଦ ଗ୍ରନ୍ଥ 'ଲତା ମଂଜରୀ'ର ପାଣ୍ଡୁଲିପି ଆଜି ପର୍ଯ୍ୟନ୍ତ ଖଲିଆପାଲି ଆଶ୍ରମରେ ସଂରକ୍ଷିତ ହୋଇ ରହିଛି। ଏ ସବୁ ତଥ୍ୟ ଦୃଷ୍ଟିରୁ 'ଦୀପିକା'ରେ ପ୍ରକାଶିତ ଏହି ସମ୍ବାଦଟି ଯେ ସମ୍ପୂର୍ଣ୍ଣ ନିରାଧାର, ଏହା ପ୍ରମାଣିତ ହୋଇଯାଏ।

ପଶ୍ଚିମ ଓଡ଼ିଶାର ଉପାନ୍ତ ଅଞ୍ଚଳରେ ଘଟୁଥିବା ଘଟଣାଗୁଡିକର ଠିକ୍ ତଥ୍ୟ ପରିବେଷଣ ସେତେବେଳେ ଆଦୌ ସମ୍ଭବପର ହୋଇନଥିବ। ଫଳରେ ଭୀମ ଭୋଇଙ୍କ ବ୍ୟକ୍ତିତ୍ୱକୁ ନେଇ ସେ ସମୟରେ ପ୍ରକାଶିତ ବିଭିନ୍ନ ରିପୋର୍ଟ ଓ ସମ୍ବାଦରେ ଗୁଡାଏ ଭିତ୍ତିହୀନ ସୂଚନା ଲିପିବଦ୍ଧ ହୋଇ ରହିଛି। ଆଶ୍ଚର୍ଯ୍ୟଜନକ ଭାବରେ ଭୀମ ଭୋଇଙ୍କର ଆବର୍ତ୍ତମାନର ଶହେ ଏଗାର ବର୍ଷ ପରେ ମଧ୍ୟ ଏ ସବୁର ସତ୍ୟାସତ୍ୟ ଲୋକ ଲୋଚନକୁ ଆସି ପାରିନାହିଁ।

## ଭୀମ ଭୋଇଙ୍କ କବିତା :

ଭୀମ ଭୋଇ ଥିଲେ ମୁଖ୍ୟତଃ କବି। ଯଦିଓ ଜଣେ ଆଧ୍ୟାତ୍ମବାଦୀ ଦାର୍ଶନିକ ଏବଂ ସମାଜ ସଂସ୍କାରକ ଭାବରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ କିନ୍ତୁ ଭାବ ହିଁ ଥିଲା ତାଙ୍କର ସବୁଠାରୁ ବଡ ପୁଞ୍ଜି। ତାଙ୍କ ସମସାମୟିକ କୌଣସି କବି ଏତେ ସଂଖ୍ୟକ କବିତା ଲେଖି ନାହାନ୍ତି। ଭୀମ ଭୋଇଙ୍କ କବିତା ରଚନା କରିବାର ଏକ ନିର୍ଦ୍ଦିଷ୍ଟ ଉପଚାର ରହିଥିଲା। ପ୍ରତିଦିନ ପ୍ରତ୍ୟୁଷରୁ ଶିଷ୍ୟ ହରି ପଣ୍ଡା ଓ ବସୁ ପଣ୍ଡା ଏକ ମଣ୍ଡପ କଳସ ଓ ଜାଗରରେ କବି ଓ ଅନ୍ନପୂର୍ଣ୍ଣା ଉପବେଶନ କଲାପରେ ତାଙ୍କ ଚାରିପଟେ ଚାରି ଜଣ ଲେଖନକାର ପ୍ରସ୍ତୁତ ହୋଇ ବସୁଥିଲେ। ସେଇ ଚାରିଜଣ ଲେଖନକାର ଥିଲେ ହରି ପଣ୍ଡା, ବସୁ ପଣ୍ଡା, ମାର୍କଣ୍ଡ ଓ ଧର୍ମାନନ୍ଦ। ଅନର୍ଗଳ ଭାବରେ କବି କବିତା ଆବୃତ୍ତି କରନ୍ତି ଓ ତାଙ୍କର ଶିଷ୍ୟମାନେ ତାକୁ ଲିପିବଦ୍ଧ କରନ୍ତି। ଏକା ରାଗରେ ଦୁଇ ଯୋଡା ଗୀତ ବାନ୍ଧିବାର ଦକ୍ଷତା ଥିଲା ତାଙ୍କର। ଶହ ଶହ କବିତା ପ୍ରତିଦିନ ରଚିତ ହୁଏ ଖଲିଆପାଲି ଆଶ୍ରମରେ। ତା'ର ପ୍ରତିଲିପି ତିଆରି କରି ରାଜ୍ୟର ବିଭିନ୍ନ ମହିମା ଟୁଙ୍ଗିକୁ ପଠାଇ ଦିଆଯାଏ। ବିଶ୍ୱନାଥ ବାବାଙ୍କ ମତ ଅନୁଯାୟୀ ୧୮୬୫ରେ ପ୍ରଥମରେ ଖୁଣ୍ଟୁଣୀଠାରେ

ମହିମା ବାଲ୍ୟଲୀଳା ଉତ୍ସବରେ ଭୀମ ଭୋଇଙ୍କ କବିତା ଗାନ କରାଯାଇଥିଲା । "ଷୋହଳ ବରଷରେ କଲି ମୁଁ କବି କୃତ୍ୟ " ବୋଲି ଭୀମ ଭୋଇ ସ୍ୱୟଂ କହିଛନ୍ତି । ତେଣୁ ୧୮୬୫ରୁ ୧୮୯୫ ମସିହା ପର୍ଯ୍ୟନ୍ତ ତାଙ୍କ କବିତାର ଧାର ଅବାରିତ ବହମାନ୍ ଥିଲା ।

'ସ୍ତୁତି ଚିନ୍ତାମଣି', 'ଭଜନ ମାଳା', 'ଚଉତିଶା ମଧୁଚକ୍ର', 'ଆଦିଅନ୍ତ ଗୀତା', 'ବ୍ରହ୍ମ ନିରୂପଣ ଗୀତା', 'ନିର୍ବେଦ ସାଧନ', 'ଶ୍ରୁତି ନିଷେଧ ଗୀତା', 'ଅଷ୍ଟକ ବିହାରୀ ଗୀତା' ଇତ୍ୟାଦି ତାଙ୍କର ପ୍ରକାଶିତ କବିତା ଗ୍ରନ୍ଥ । ତା' ବାହାରେ ଆହୁରି ଅଜସ୍ର ପାଣ୍ଡୁଲିପି ଅପ୍ରକାଶିତ ରହିଛି ବୋଲି ତାଙ୍କର ଶିଷ୍ୟ ପ୍ରଶିଷ୍ୟମାନେ ମତ ଦେଇଥାନ୍ତି । ବିଶେଷ କରି ଚାରୋଟି ଭାଗରେ ରଚିତ 'ମହିମା ବିନୋଦ' ପାଣ୍ଡୁଲିପିଟି ଆଜି ପର୍ଯ୍ୟନ୍ତ ପ୍ରକାଶିତ ହୋଇ ପାରିନାହିଁ । କ୍ଷେତ୍ର ଅଧ୍ୟୟନ କାଳରେ 'ମହିମା ବିନୋଦ'ର ତିନି ଖଣ୍ଡ ପାଣ୍ଡୁଲିପି ଆମର ହସ୍ତଗତ ହୋଇଛି । ଉକ୍ତ କାବ୍ୟ ଗ୍ରନ୍ଥର ଭାଷା ଅତ୍ୟନ୍ତ ବିଚିତ୍ର । ଏଥିରେ ବଙ୍ଗଳା, ଓଡ଼ିଆ ଏବଂ କୋଶଳିର ଅଦ୍ଭୂତ ସମନ୍ୱୟ ଘଟିଛି । ବିଷୟବସ୍ତୁ ଦୃଷ୍ଟିରୁ ଏହାକୁ ଓଡ଼ିଆ ସାହିତ୍ୟର ସର୍ବପ୍ରଥମ ଭ୍ରମଣ କାବ୍ୟ ବୋଲି କୁହାଯାଇ ପାରେ । ମହିମା ଗୋସାଇଁ ଓଡ଼ିଶା ଏବଂ ଭାରତବର୍ଷର ବିଭିନ୍ନ ସ୍ଥାନ ପରିଭ୍ରମଣ କରିବାର ବର୍ଣ୍ଣନା ଉକ୍ତ କାବ୍ୟରେ ରହିଛି । ବହୁ ଐତିହାସିକ ତଥ୍ୟ ସମ୍ବଳିତ ଏହି କାବ୍ୟଟି ପ୍ରକାଶିତ ହୋଇ ନପାରିବା ପରିତାପର ବିଷୟ ।

## କବିତାର ସାମାଜିକ ପ୍ରଭାବ :

ନିଜ ଜୀବନ ସମୟ, ସମାଜ, ସଂସ୍କୃତି ଓ ପରଂପରାର କାବ୍ୟିକ ଉତ୍ତରଣ ଭୀମ ଭୋଇଙ୍କୁ ଅମରତ୍ୱ ପ୍ରଦାନ କରିଛି । ଆଧୁନିକ କାଳର ସେ ଏକମାତ୍ର କବି ଯାହାଙ୍କର ଜୀବନ କାଳ ମଧ୍ୟରେ ଧାଡିଏ ବି କବିତା ମୁଦ୍ରିତ ହୋଇ ପାରିନାହିଁ । ଅଥଚ ଜଗନ୍ନାଥ ଦାସଙ୍କ ଭାଗବତ ପରେ ଭୀମ ଭୋଇଙ୍କ କବିତା ହେଉଛି ଓଡ଼ିଶାର ଲୋକସାଧାରଣଙ୍କର ଅତି ପ୍ରିୟ । ତାଙ୍କ ମୃତ୍ୟୁର ଅନେକ ବର୍ଷ ପରେ ତାଙ୍କ କବିତା ମୁଦ୍ରିତ ହେଲା ଓ ବୌଦ୍ଧିକ ଆଲୋଚନାର ପରିସରଭୁକ୍ତ ହେଲା । ଓଡ଼ିଶାର ସେ ଏକମାତ୍ର କବି ଯାହାଙ୍କ ଜୀବନ ଓ କବିତା ଭିତରେ କିଛି ତଫାତ୍ ନଥିଲା । କେବଳ କବିତା ରଚନା କରି ଯଶଭୋଗ ଲାଳସା ତାଙ୍କର ନଥିଲା । ନିଜକୁ କବି ବୋଲାଇବାରେ ତାଙ୍କର ବିମଳ ଆନନ୍ଦ । ମହିମା ଧର୍ମର ଜଣେ ନିଷ୍ଠାପର ସାଧକ ଏବଂ ପ୍ରଚାରକ ଭାବରେ ତାଙ୍କର ଅଙ୍ଗୀକାରବଦ୍ଧତା ସ୍ୱାଭାବିକ । ହେଲେ ସେ ଅଙ୍ଗୀକାର ଯେ କବିତାରେ ଅବିକଳ ପ୍ରତିଭାତ ହେବ, ଏକଥା ଜଣେ ସାଧାରଣ କବିର କଳ୍ପନା ବାହାରେ । ଜୀବନକୁ ଜଳେଇ ଜଳେଇ, ସେହି ଅଗ୍ନିରେ ଶବ୍ଦ ନିର୍ମାଣ କରିଛନ୍ତି ଭୀମ ଭୋଇ । ତେଣୁ ତାଙ୍କ ଜୀବନ ଓ କବିତା ଅସହାୟ ମଣିଷ

ହାତରେ ଆତ୍ମରକ୍ଷାର ଅସ୍ତ୍ର ଧରେଇ ଦେଇଛି। ଧାର୍ମିକ ରୁଢ଼ିର ଖଣ୍ଡନ ଲାଗି ସେ ସଜିଲ୍ କିରଛନ୍ତି ଶ୍ୱାସ ଓ ଶବ୍ଦ।

ଆଧୁନିକ ଓଡ଼ିଆ କବିତାର ଆରମ୍ଭ କାଳରେ ଭୀମ ଭୋଇଙ୍କ କବିତା ସର୍ଜନା ଏକ ବିଶେଷ ଘଟଣା। ଦୁଃଖର କଥା ଆମ ସାହିତ୍ୟ ଇତିହାରେ ଏ ବିଷୟରେ ଆଜି ପର୍ଯ୍ୟନ୍ତ ସବିଶେଷ ଆଲୋଚନା ହୋଇନାହିଁ। ବିଦ୍ରୋହ, ବିଶ୍ୱାସ ଏବଂ ଜୀବନ ପ୍ରତି ଅପୂର୍ବ ଆସକ୍ତି ହେଉଛି ଭୀମ ଭୋଇଙ୍କ କବିତାର ମୂଳ ଭିତ୍ତି। ତାଙ୍କ କବିତାର ଆବେଦନ ମନ୍ତ୍ରପାୟ। କବିତାରେ ମନ୍ତ୍ର ଶକ୍ତିର ଯେଉଁ କଥାଟି କୁହାଯାଏ, ସେହି ପ୍ରସଙ୍ଗରେ ଭୀମ ଭୋଇ ବୋଧହୁଏ ଓଡ଼ିଆ କବିତାର ଶେଷ ମନ୍ତ୍ରସିଦ୍ଧ କବି। 'ସ୍ତୁତି ଚିନ୍ତାମଣି'ର ୭୧ରୁ ୭୮ ବୋଲି ପର୍ଯ୍ୟନ୍ତ ପାଠ କଲେ ସର୍ପବିଷ ହରଣ ହୋଇଯାଏ ବୋଲି ଆଜି ବି ମହିମା ଧର୍ମର ଭକ୍ତମାନେ ବିଶ୍ୱାସ କରନ୍ତି। ସେହପରି ତାଙ୍କ 'ଆଠ ଭଜନ' ବହୁ ଅସାଧ୍ୟ ସାଧନ କରିପାରେ ବୋଲି ଲୋକ ଧାରଣା ରହିଛି। କବିତା ପ୍ରତି ଜନସାଧାରଣଙ୍କର ଆସ୍ଥାର ଶେଷ ସଂକେତ ଭାବରେ ଭୀମ ଭୋଇ ଯେମିତି ଆଲୋଚିତ ହେବା କଥା ସେପରି ନ ହେବା ବିଡମ୍ବନାର ବିଷୟ।

## ଭୀମ ଭୋଇ ଜୀବନ ଓ ସାହିତ୍ୟର ଗବେଷଣା

ପୂର୍ବରୁ ସୂଚନା ଦିଆଯାଇଛି ଯେ, ଭୀମ ଭୋଇଙ୍କ ଜୀବନ କାଳ ମଧ୍ୟରେ ତାଙ୍କର ଖଣ୍ଡିଏ ବି ଗ୍ରନ୍ଥ ପ୍ରକାଶିତ ହୋଇ ନାହିଁ। ତତ୍କାଳୀନ ପତ୍ରପତ୍ରିକାରେ ତାଙ୍କ ଜୀବନର କିଛି କିଛି ବିରୂପ ଆଲୋଚନା ହୋଇଥିଲେ ମଧ୍ୟ ତାଙ୍କ କାବ୍ୟ ପ୍ରତିଭା ବିଷୟରେ ଆଦୌ କିଛି ଉଲ୍ଲେଖ ନାହିଁ। ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ନଗେନ୍ଦ୍ର ନାଥ ବସୁଙ୍କର Archaelogical Survey of Mayurbhanja ଏବଂ Modern Buddihism and its flowers in Orissa, ବିଜୟ ଚନ୍ଦ୍ର ମଜୁମ୍‌ଦାରଙ୍କର Sonepur in Sambalpur Tract ଏବଂ Typical Selection's from Oriya Poetry ଥିଲା ଭୀମ ଭୋଇଙ୍କ ସଂପର୍କରେ ପ୍ରାଥମିକ ଗବେଷଣା। ଏହାକୁ ଗବେଷଣା କହିବା ଅପେକ୍ଷା ସୂଚନା କହିବା ବେଶି ପ୍ରାସଙ୍ଗିକ ହେବ। ୧୯୧୧ରେ ବିଜୟ ଚନ୍ଦ୍ର ମଜୁମ୍‌ଦାର ଭୀମ ଭୋଇଙ୍କ କବିତାର ପ୍ରାଥମିକ ଆକଳନ ଏବଂ ଆଲୋଚନା କଲାପରେ ସୋନପୁର ମହାରାଜା ବୀରମିତ୍ରୋଦୟ ସିଂହଦେଓଙ୍କ ସହାୟତାରେ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀ ସମିତି ଆନୁକୂଲ୍ୟରେ ଭୀମ ଭୋଇଙ୍କ କିଛି ଗ୍ରନ୍ଥ ପ୍ରକାଶିତ କଲେ। ମହିମା ଧର୍ମ ଏବଂ ଭୀମ ଭୋଇଙ୍କ କିଛି ଗ୍ରନ୍ଥ ପ୍ରକାଶିତ କଲେ। ମହିମା ଧର୍ମ ଏବଂ ଭୀମ ଭୋଇଙ୍କ ସଂପର୍କରେ ପ୍ରଥମ ପ୍ରାମାଣିକ ଓଡ଼ିଆ ଗବେଷଣା ଗ୍ରନ୍ଥଟି ଥିଲା ପ୍ରଫେସର ଚିତ୍ତରଂଜନ

ଦାସଙ୍କ 'ଓଡ଼ିଶାର ମହିମା ଧର୍ମ' (ପ୍ରକାଶକ ବିଶ୍ୱଭାରତୀ, ୧୯୫୨)। ଉକ୍ତ ପୁସ୍ତକରେ ମଧ୍ୟ ଭୀମ ଭୋଇଙ୍କର ଏକ ପୂର୍ଣ୍ଣାଙ୍ଗ ଆଲୋଚନା ଆମେ ପାଇ ନାହୁଁ।

ଷାଠିଏ ଦଶକରେ ଜର୍ମାନୀର ହାଇଡେଲ୍‌ବର୍ଗ ବିଶ୍ୱବିଦ୍ୟାଳୟ ତରଫରୁ ଓଡ଼ିଶାରେ ଏକ ସ୍ୱତନ୍ତ୍ର ଗବେଷଣା ପ୍ରକଳ୍ପର ଶୁଭାରମ୍ଭ କରାଗଲା। ଜଗନ୍ନାଥ ସଂସ୍କୃତିର ଗବେଷଣା କାଳରେ ଏହାକୁ ସମୃଦ୍ଧ କରିଥିବା ଆଦିବାସୀ ସଂସ୍କୃତି ଏବଂ ବିରୋଧ କରିଥିବା ମହିମା ଧର୍ମ ଉପରେ ସ୍ୱତନ୍ତ୍ର ଗବେଷଣା ପାଇଁ ପ୍ରଖ୍ୟାତ ଜର୍ମାନ୍ ଗବେଷିକା ଆନସର୍‌ଲାଇଟ୍ ଏସ୍‌ମାନ୍ ପ୍ରୟାସ କରିଥିଲେ। ମହିମା ଧର୍ମର ପ୍ରାୟ ସମସ୍ତ କେନ୍ଦ୍ରସ୍ଥଳ ପରିଦର୍ଶନ କରି ଶ୍ରୀମତୀ ଏସ୍‌ମାନ୍ ବୈଜ୍ଞାନିକ ପଦ୍ଧତିରେ ଗୁଡାଏ ତଥ୍ୟ ଏବଂ ସୂଚନା ସଂଗ୍ରହ କରିଥିଲେ। ମାତ୍ର ଚାରି-ପାଞ୍ଚଟି ଗବେଷଣା ପତ୍ର ପ୍ରସ୍ତୁତ କରିସାରିଲା ପରେ ୬ ଏପ୍ରିଲ୍ ୧୯୭୭ରେ ସେ ଅକାଳ ମୃତ୍ୟୁ ବରଣ କଲେ। ଫଳତଃ ତାଙ୍କ ପ୍ରୟାସର ପୂର୍ଣ୍ଣାଙ୍ଗ ସ୍ୱରୂପ ପ୍ରକଟିତ ହୋଇ ପାରିଲା ନାହିଁ।

ଶ୍ରୀମତୀ ଏସ୍‌ମାନଙ୍କ ଅସମ୍ପୂର୍ଣ୍ଣ ଗବେଷଣାକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ୧୯୯୮ରେ ହାଇଡେଲ୍‌ବର୍ଗ ବିଶ୍ୱବିଦ୍ୟାଳୟ ତରଫରୁ ପ୍ରଫେସର ଜୋହାନସ୍ ବେଲସ୍, ପ୍ରଫେସର ବେଟିନା ବମର ଓ ଡ. ଲିଡିଆ ଗୁଜିଙ୍କୁ ଦାୟିତ୍ୱ ଅର୍ପଣ କରାଯାଇଥିଲା। ଏହି ଗବେଷଣାର ଫଳ ସ୍ୱରୂପ ଚଳିତ ବର୍ଷ ପ୍ରକାଶିତ ହେବାକୁ ଯାଉଛି "Bhima Bhoi Verses from the Void" ପୁସ୍ତକ। ଏହା ବ୍ୟତୀତ ବହୁ ଆନ୍ତର୍ଜାତିକ ଆଲୋଚନା ଚକ୍ରରେ ମହିମା ଧର୍ମ ଓ ଭୀମ ଭୋଇଙ୍କ ସଂପର୍କରେ ଏହି ବିଦେଶୀ ଗବେଷକମାନେ ବହୁ ଉନ୍ନତ ମାନର ଗବେଷଣା ପତ୍ର ଉପସ୍ଥାପନ କରିଛନ୍ତି। ଏତଦ୍‌ବ୍ୟତୀତ ମହିମା ଧର୍ମର ଉପଲବ୍ଧ ତଥ୍ୟ ସୂଚନାମାନଙ୍କୁ www.mahimadharma.deରେ ସଂକଳିତ କରାଯାଇଛି।

ଊନବିଂଶ ଶତାବ୍ଦୀର ଏକ ସଂକଟଜନକ ଅଧ୍ୟାୟରେ ମହିମା ଗୋସାଇଁ ଏବଂ ଭୀମ ଭୋଇଙ୍କ ଆବିର୍ଭାବ ଥିଲା ସମାଜର ଦଳିତବର୍ଗ ପାଇଁ ଏକ ନବଜାଗରଣର ପର୍ବ। ଭାରତ ବର୍ଷରେ ଦଳିତ ଆନ୍ଦୋଳନ ବହୁ ବିଳମ୍ବରେ ଆରମ୍ଭ ହୋଇଛି। କିନ୍ତୁ ଦଳିତ ଜାତିର ସାମାଜିକ, ଅର୍ଥନୈତିକ ଏବଂ ଆଧ୍ୟାତ୍ମିକ ବିକାଶ ପାଇଁ ଭୀମ ଭୋଇଙ୍କର ଉଦ୍ୟମ ଆଜି ପର୍ଯ୍ୟନ୍ତ ଇତିହାସର ଏକ ଅବହେଳିତ କୋଣରେ ପଡି ରହିଛି। ନୂତନ ଗବେଷଣା ପରେ ଆନ୍ତର୍ଜାତିକ ସ୍ତରରେ ମହିମା ଧର୍ମ ଓ ଭୀମ ଭୋଇଙ୍କୁ ଏକ ନୂଆ ମାର୍ଗରେ ଅନୁଶୀଳନ କରିବାର ପ୍ରୟାସ ଆରମ୍ଭ ହୋଇ ସାରିଛି।



# ଆଲୁଅ ଅନ୍ଧାରର କାହାଣୀ

## ବେବି ହାଲ୍‌ଦାର

ବହିର ନାଁ ଆଲୋ-ଆଁଧାରି। ବହିଟି ଉପନ୍ୟାସ, ଗପ କି କବିତା ନୁହଁ - ଏକ ସାଧାରଣ ଜୀବନ କାହାଣୀ। ସାଧାରଣମାନେ ନିହାତି ମାମୁଲି ଓ ସମାଜର ଶେଷ ଧାଡିରେ ଠିଆ ହୋଇଥିବା ଜଣେ ନିର୍ଯ୍ୟାତିତ ସ୍ତ୍ରୀଲୋକର କାହାଣୀ। ଘରୋଇ ଚାକରାଣୀ ଭାବରେ ଗୁଜୁରାଣ ମେଣ୍ଟାଉଥିବା, ବାସନ ମାଜି ପାପୁଲିକୁ କଳା ଓ ଦଦରା କରିଥିବା ଓ ଜୀବନର ଯାବତୀୟ ଯନ୍ତ୍ରଣାକୁ ହସି ହସି ପିଇ ଯାଉଥିବା ଗୋଟିଏ ସ୍ତ୍ରୀ ଲୋକ ଯେଉଁ ଆଲୁଅ ଅନ୍ଧାରର ଜୀବନ ବଂଚେ, ସେତକ ହିଁ ଏଇ ବହିର ବିଷୟ। ବର୍ଣ୍ଣନାରେ ବ୍ୟଞ୍ଜନା ନାହିଁ, ସିଧାସିଧା ହୃଦୟରୁ ଉତୁରି ଆସିଛି ଭାବ ଓ ଶବ୍ଦ। ଏହାକୁ ସାହିତ୍ୟ କୁହାଯିବ କି ନା, ତାହା ବଡ ପ୍ରଶ୍ନ ନୁହଁ। ପ୍ରଶ୍ନ ହେଉଛି ସାହିତ୍ୟ ଏହିପରି ଏକ ଜୀବନର ଅନୁଭବକୁ କେଉଁ ପ୍ରକାରେ ମୂଲ୍ୟାୟନ କରିବ? ଏଯାବତ୍ ଶିଷ୍ଟ ଓ ସମ୍ଭ୍ରାନ୍ତଙ୍କ ଜାଗିରି ଭାବରେ ବିବେଚିତ ସାହିତ୍ୟରେ ସବୁଠୁ ପଛୁଆବର୍ଗ ଓ ତଥାକଥିତ ଅଶିକ୍ଷିତମାନଙ୍କ ପ୍ରବେଶକୁ ଦୁନିଆଁ ଏବେ କାବା ହୋଇ ଚାହିଁ ରହିବାକୁ ବାଧ୍ୟ। ହଁ, ଏ ବହିର ଲେଖିକା ବେବି ହାଲ୍‌ଦାର। ବୃତ୍ତିରେ ଜଣେ ଘରୋଇ ଚାକରାଣୀ। ଗୁରଗାଓଁର ଏହି ଘରୋଇ କାମଦାମ କରୁଥିବା ସ୍ତ୍ରୀଲୋକ ଜଣକ ଏବେ ପୃଥିବୀର ସାହିତ୍ୟ କ୍ଷେତ୍ରରେ ଏକ ବହୁ ଚର୍ଚ୍ଚିତ ନାମ। ତାଙ୍କ ଜୀବନ କାହାଣୀ ପ୍ରଥମେ ହିନ୍ଦୀରେ ପ୍ରକାଶିତ ହେଲାପରେ ଏବେ ଇଂରାଜୀ ଓ ଅନ୍ୟାନ୍ୟ ଭାରତୀୟ ଭାଷାରେ ଅନୁଦିତ ହୋଇ ବହୁ ସଂଖ୍ୟାରେ ବିକ୍ରି ହେଉଛି।

ମାତ୍ର ସପ୍ତମ ଶ୍ରେଣୀ ପାଠ ପଢିଥିବା ବେବି ହାଲ୍‌ଦାରଙ୍କ ଭାଷା ଓ ସାହିତ୍ୟ ଜ୍ଞାନ ଯଥେଷ୍ଟ ସୀମିତ। ତଥାପି ଜୀବନର ନିରୁତା ଅନୁଭବକୁ ଖୁବ୍ ସହଜରେ ଏବଂ ସରଳ ଭାଷାରେ ବ୍ୟକ୍ତ କରିଛନ୍ତି ସେ। ବେବି ମୂଳତଃ ବଙ୍ଗାଳୀ। ଜନ୍ମ ତାଙ୍କର କାଶ୍ମୀରରେ। ବାପା ଥିଲେ ଭାରତୀୟ ସେନାବାହିନୀର ସୈନିକ। ଜାମ୍ମୁ-କାଶ୍ମୀର, ମୁର୍ସିଦାବାଦ, ଡେଲହାଉସୀ ଇତ୍ୟାଦି ଖୁବ୍ ସୁନ୍ଦର ଜାଗାମାନଙ୍କରେ କଟିଛି ତାଙ୍କର ପିଲାଦିନ। ବାପା

ଥିଲେ ଗୋଟେ ଅଦ୍‌ଭୂତ ସ୍ୱଭାବର ମଣିଷ। ପିଲାଦିନରୁ ବାପା ଓ ମା'ଙ୍କ ସଂପର୍କରେ ଉତ୍ତେଜନାର ଆଭାସ ପାଇଛନ୍ତି ବେବି। କୁଆଡେ କୁଆଡେ ବୁଲୁଥାନ୍ତି ତାଙ୍କ ବାପା ସ୍ତ୍ରୀ ଓ ପିଲାପିଲିଙ୍କୁ ଉପେକ୍ଷା କରି। ଭାଇ-ଭଉଣୀର ଏକ ବଡ ପରିବାରକୁ ବେବିଙ୍କ ମା' ବଡ କଷ୍ଟରେ ଚଳାଇ ରଖନ୍ତି। ପୁରୁଷ ତାନ୍ତ୍ରିକ ସମାଜରେ ବେବିଙ୍କ ମା' ଗୋଟେ ଖେଳନା କଣ୍ଢେଇ ପରି ନିର୍ଯାତିତ ହୁଅନ୍ତି। ହଠାତ୍ ଦିନେ ବେବିଙ୍କ ହାତରେ ୧୦ ପଇସିଟିଏ ଧରାଇ ଦେଇ କୁଆଡେ ନିଖୋଜ ହୋଇଯା'ନ୍ତି ତାଙ୍କ ମା'। ସବୁ କଥାରେ ଏବେବି ନିଜ ମା'ଙ୍କୁ ଝୁରି ହୁଅନ୍ତି ବେବି। ସ୍ୱାମୀଙ୍କ ଉପେକ୍ଷା ଓ ପିଲାପିଲିଙ୍କ ଦୟନୀୟ ଅବସ୍ଥା ସହ୍ୟ ହୋଇପଡେ। ଫଳରେ ବେବିଙ୍କ ମା' ଘରଛାଡି ଚାଲିଯାନ୍ତି, ହୁଏତ ସେ ଆତ୍ମହତ୍ୟା କରିଥାଇ ପାରନ୍ତି।

ମା'ଙ୍କ ନିଖୋଜ ହେବା ପରେ ବାପା ଲାଗ ଲାଗ ଦୁଇଥର ବିବାହ କରନ୍ତି। ଆରମ୍ଭ ହୁଏ ବେବିଙ୍କ ବିସ୍ଥାପିତର ଜୀବନ। ସଂପର୍କୀୟମାନଙ୍କ ଘରେ ଅବହେଳା ଓ ଯାତନାର ଜୀବନ ଜିଅନ୍ତି ସେ। ବିମାତାର ଈର୍ଷା ଓ କଟୁକଥା ସହ୍ୟ କରନ୍ତି। ନିଜ ଆଖିରେ ଦେଖନ୍ତି ବଡଭଉଣୀର ଉଜୁଡି ଯାଉଥିବା ଜୀବନ। ୧୩ ବର୍ଷ ବୟସରେ ତାଙ୍କୁ ବିବାହ କରିଦିଆଯାଏ ଓ ୨୫ ବର୍ଷ ହେଲା ବେଳକୁ ବେବି ତିନୋଟି ଛୁଆର ମା'। ଜୀବନର ପ୍ରତିଟି ମୁହୂର୍ତ୍ତ ଯାତନା ଓ ଯନ୍ତ୍ରଣା ଭିତରେ ବିତିଛି। ପ୍ରତି ମୁହୂର୍ତ୍ତ ନାରୀଟିଏର ବ୍ୟଥିତ ଜୀବନଗାଥା ଶୁଣାଇଛନ୍ତି ବେବି ହାଲ୍‌ଦାର। ବିବାହ ତାଙ୍କ ପାଇଁ ଥିଲା ଏକ ଦିବାସ୍ୱପ୍ନ। ପାଠ ପଢିବାକୁ ସ୍କୁଲ୍‌କୁ ଯିବା ପରିବର୍ତ୍ତେ ତାଙ୍କୁ ସମ୍ଭାଳିବାକୁ ପଡିଲା ସଂସାର। ସଂସାରୀମାନେ ଗୋଟିଏ ବେକାରୀ ସ୍ୱାମୀ, ଯିଏ ସବୁବେଳେ ପତ୍ନୀକୁ ନିଜର ଚାକରାଣୀ ବୋଲି ଭାବେ। ଚୂଡିପଟେ କି ସିନ୍ଦୂର ଫରୁଆଟିଏ କିଣିବା ପାଇଁ ହାତ ପତାଇବାକୁ ପଡେ ପତ୍ନୀକୁ। ବେବି ତାଙ୍କୁ ଏହି ଅନୁଭବକୁ ଖୁମ୍ ମାର୍ମିକ ଭାଷାରେ ବର୍ଣ୍ଣନା କରିଛନ୍ତି। 'ମୋ' ବର 'ମୋ' ହାତରେ ଟଙ୍କାଦିଏ ବି ଦିଏ ନାହିଁ। ସୁବକଥାରେ ମୁଁ ତା ଉପରେ ନିର୍ଭରଶୀଳ। ଶଙ୍ଖା ପିନ୍ଧିବା ମନ ହେଲେ ତାକୁ କହିବାକୁ ପଡିବ। ଏପରିକି ସିନ୍ଦୂର କିଣିବା ପାଇଁ ବି ମୋ' ପାଖରେ ପଇସା ନଥାଏ। ମୁଁ ପଇସା ମାଗେ, ଦେବା ନଦେବା ତା' ଇଚ୍ଛାର କଥା। ସାହିକୁ ସବୁଦିନ ଫେରିବାଲାମାନେ ଆସନ୍ତି ରକମ ରକମ ଜିନିଷ ବିକିବା ପାଇଁ। ସାହିର ଝିଅ-ବୋହୂମାନେ କେତେ ଆନନ୍ଦରେ ଜିନିଷ କିଣନ୍ତି। ସେମାନଙ୍କୁ ଜିନିଷ କିଣିବାର ଦେଖିଲେ ମୋତେ ବେଶ୍ ଦୁଃଖ ଲାଗେ। ବଜାର ବି ସେ ନିଜେ କରେ। ଯେତେବେଳେ ମୋ' ପାଖରେ ଆଦୌ ପଇସା ରହିଲା ନାହିଁ, ମୁଁ ଗୋଟିଏ ଉପାୟ ପାଞ୍ଚିଲି। ରୋଷେଇ କଲାବେଳେ ପ୍ରତିଦିନ ମୁଠାଏ ଚାଉଳ ମୁଁ ଅଲଗା ଜମାକରି ରଖୁଥିଲି। କିଛିଦିନ ପରେ

ମୋ' ବର ଚାଉଳ କିଣିବାକୁ ବ୍ୟାଗ୍ ନେଇ ବାହାରିଲା ବେଳକୁ ମୁଁ ତାକୁ କହିଲି, ମୋ' ପାଖରେ ଚାଉଳ ଅଛି କିଣିବ ? ସେ କିଛି ନକହି ଚୁପ୍‌ଚାପ୍ ବ୍ୟାଗ୍ ରଖି ଚାଲିଗଲା। ଭାବିଥିଲି ଏମିତିରେ କିଛି ପଇସା ଆସିବ। ବେକାରରେ ସିଏ ବି ଗଲା। ତା'ପରଦିନ ମୁଁ ତାକୁ କହିଲି ଚାଉଳ ଆଣ, ନହେଲେ ଖାଇବ କ'ଣ ? ସେ କହିଲା, ତୁ କହୁଥିଲୁ ପରା ଚାଉଳ ଅଛି। ମୁଁ କହିଲି ବିନା ପଇସାରେ ମୁଁ ଚାଉଳ ଦେବି ନାହିଁ। ମୋର କ'ଣ ପଇସାପତ୍ର କିଛି ଦରକାର ନାହିଁ। ସେ ହସିଲା ଓ ମାତ୍ର ୧୦ ଟଙ୍କା ମୋ'ହାତରେ ଧରାଇଦେଲା।

ଏମିତି ଖୁବ୍ ଛୋଟ ଛୋଟ ଜୀବନର ଅନୁଭବ ଲେଖିଛନ୍ତି ବେବି। ସମାଜର ଶେଷ ଧାଡିରେ ବଂଚୁଥିବା ସ୍ତ୍ରୀ ଲୋକଟିଏ କେଉଁ ପ୍ରକାର ଜୀବନ ଜୀଇଁଥାଏ ତା'ର ଏକ ମାର୍ମିକ ବୟାନ ହେଉଛନ୍ତି ଆଲୋ-ଆଁଧାରୀ। ଜୀବନର ବିସଙ୍ଗତି ଏବଂ ଅର୍ଥନୈତିକ ଦୃଷ୍ଟିରୁ ନାରୀ ଜୀବନର ଅବସ୍ଥା ଏଥିରେ ପ୍ରତିଫଳିତ ହେଉଛି। ସ୍ୱାଭିମାନ ଏବଂ ସ୍ୱପ୍ନ ପାଇଁ ସଂଘର୍ଷ କରୁଥିବା ବେବି ହାଲ୍‌ଦାର କଦାପି ହାରିନାହାଁନ୍ତି। ପୁରୁଷତାନ୍ତ୍ରିକ ସମାଜରେ ବାପା, ଭାଇ, ସ୍ୱାମୀ ତଥା ପରିବାରର ଅନ୍ୟମାନଙ୍କଠାରୁ ଯାତନା ଓ ଗଂଜଣା ସହିଥିଲେ ମଧ୍ୟ ତାଙ୍କର ମନୋବଳ ଭାଙ୍ଗିନାହିଁ। ନାରୀ ଯେ କେବଳ ଯୌନ ପିପାଶା ମେଣ୍ଟାଇବା ପାଇଁ ଏକ ବସ୍ତୁମାତ୍ର ଏମିତି ଏକ ଭାବନା ଭାରତୀୟ ପୁରୁଷମାନଙ୍କର ରହିଥାଏ। ବେବିଙ୍କ ସ୍ୱାମୀ ତା'ର ବ୍ୟତିକ୍ରମ ନଥିଲା। ଗୋଟେ ବସ୍ତୁପରି ବ୍ୟବହୃତ ହେଉଥାଏ ତାଙ୍କର ଜୀବନ। ବାପଘର ଏବଂ ଶ୍ୱଶୁର ଘର ଭିତରେ ରହିଥିବା ଏକ ବିଚିତ୍ର ବିରୋଧାଭାଷ ଭିତରେ ସେ ବଂଚୁଥାଏ। ଉଚ୍ଚବର୍ଗ ହେଉ ବା ଦଳିତବର୍ଗ, ସବୁକ୍ଷେତ୍ରରେ ନାରୀର ଅବସ୍ଥା ଭୀଷଣ ଭାବରେ ଦୟନୀୟ। ରୋଷେଇ କରିବା, ପିଲା ଜନ୍ମକରିବା ଏବଂ ସ୍ୱାମୀ, ଶ୍ୱଶୁରଙ୍କ ସେବା କରିବା ବ୍ୟତୀତ ତା'ର ଅନ୍ୟକିଛି ଉଚ୍ଚାଭିଳାଷ ରହିବା ଏକରକମ ପାପ- ଏମିତି ଏକ ଧାରଣା ଆମ ସମାଜରେ ରହିଛି। ବେବି ଏହି ଧାରଣା ବିରୋଧରେ ଏକ ତୀବ୍ର ପ୍ରତିବାଦ।

ନିହାତି ଦଳିତ ଏବଂ ପଛୁଆ ଜୀବନ ତାଙ୍କର। ହତାଶା ଏବଂ ସ୍ୱପ୍ନହୀନତାର ଜୀବନ ଭିତରେ ସାହିତ୍ୟ ସର୍ଜନା କରିଛନ୍ତି ସେ। ସେ ସାହିତ୍ୟ ଭିନ୍ନ ଉପାଦାନରେ ଗଢା। ତତ୍ତ୍ୱ ଏବଂ ଦର୍ଶନ ଅପେକ୍ଷା ଜୀବନ ସେ ସାହିତ୍ୟର ସବୁଠୁ ବଡ ଆକର୍ଷଣ। ତାଙ୍କର ଦରପାଠୁଆ ଜୀବନ ଅନୁଭବରେ ରହିଛି ସ୍ୱଚ୍ଛତା, ନିରିହତା ଏବଂ ଏକ ନିଷ୍କଳଙ୍କ ସ୍ପର୍ଶ। ନିଜ ଘର ଭିତରେ ପେଟ ଯନ୍ତ୍ରଣାରେ ବ୍ୟାକୁଳ ହେଉଥିବା ବେବିଙ୍କୁ କେମିତି ଆହାଃ ପଦ କରିବା ପାଇଁ ଲୋକଟିଏ ନଥାଏ ସେକଥା କହିଛନ୍ତି ସେ। ଗର୍ଭ ଯନ୍ତ୍ରଣା ସମୟର ଅନୁଭବକୁ ବେବି ଲେଖିଛନ୍ତି ସିଧା ଓ ସରଳ ଭାଷାରେ।

ମୋ'ପେଟରେ ଖୁବ୍ ଯନ୍ତ୍ରଣା। ସେଦିନ ମୋ' ଭାଇ ବଜାରରୁ ଫେରିବା ବାଟରେ ମୋ' ଅବସ୍ଥା ଦେଖି ବାପା-ମା'ଙ୍କୁ ଖବର ଦେଲା। ଘରେ ମୋ' ସ୍ୱାମୀ ନଥାଏ। ବାପା ମା', ଭାଇ ଆସିବା ପରେ ମୋ' ସ୍ୱାମୀ ସହ ସେମାନଙ୍କର ଝଗଡା ଆରମ୍ଭ ହୋଇଗଲା। ମୋ ପେଟର ଯନ୍ତ୍ରଣା କଥା କାହାକୁ ଦିଶୁନଥାଏ। ମୋ ବଡ ଭଉଣୀ ମୋତେ ଟିକେ ସାହସ ଦେଲା। ବିରକ୍ତି ହୋଇ ମୋ ସ୍ୱାମୀଙ୍କୁ କହିଲା, ଦେଖ ଶଙ୍କର! ବେବିର ଯନ୍ତ୍ରଣା କମୁନାହିଁ, ଅନ୍ତତଃ ଧାଇଟିଏକୁ ଡାକିଆଣ। ସେ କେବଳ ଚୁପ୍ ଚାପ୍ ଦିଦିର କଥା ଶୁଣିଲାମାତ୍ର। ଲାଗ ଲାଗ୍ ଦିଦି ଜିଦ୍ କରିବାରୁ ସେ ଗୋଟିଏ ଧାଇ ଡାକି ଆଣିଲା। ମୋ' ପେଟକୁ ସାମାନ୍ୟ ମାଲିସ୍ କରିଦେଇ ଧାଇ କହିଲା- ଏବେ ପିଲା ହେବାର ନାହିଁ। ଆହୁରି କିଛିଦିନ ପରେ ଯାଇ ଯାହା ହେବ। ମୁଁ ପେଟ ଯନ୍ତ୍ରଣାରେ ଦିନ ଦିନ ଧରି ଛଟପଟ ହେଉଥାଏ। ମୋତେ ଡାକ୍ତର ପାଖକୁ ନେବାକୁ କାହାର ଆଗ୍ରହ ବି ନଥାଏ। ଅବଶ୍ୟ ଆମ ପାଖରେ ପଇସା ବି ନଥାଏ।

ନିଜ ପିଲା ଜନ୍ମର ଛୋଟବଡ ସବୁ ଅନୁଭବ ବିଷୟରେ ବିସ୍ତାରିତ କରି ଲେଖିଛନ୍ତି ବେବି। ମାତ୍ର ୧୪/୧୫ ବର୍ଷର ଗୋଟିଏ ବାଳିକା ମା' ହେବାର ଯେଉଁ ନିର୍ମମ ଅନୁଭବ ତାକୁ ପଢିଲେ ରୋମ ଟାଙ୍କୁରି ଉଠେ। ବେବି ଏଠି କେବଳ ଜଣେ ଏକକ ନାରୀ ନୁହଁନ୍ତି, ସମଗ୍ର ଭାରତୀୟ ନାରୀ ସମାଜର ପ୍ରତିନିଧି ଭାବରେ ତାଙ୍କର ସ୍ୱର ଯେତିକି ଉଦାସ, ସେତିକି ତୀବ୍ର। ପ୍ରତିଦିନ ଭାରତର ଗାଁ ଓ ସହରରେ ଲକ୍ଷ ଲକ୍ଷ ମହିଳା ଏମିତି ନିର୍ଯାତନା ଓ କଷ୍ଟର ଶିକାର ହୁଅନ୍ତି। ତାଙ୍କ ପାଇଁ ଆହା ପଦ ନଥାଏ କି ଔଷଧ ଟୋପାଏ ନଥାଏ। ତିନି ତିନିଥର ବଡ ବିକଳ ଅବସ୍ଥାରେ ପିଲା ଜନ୍ମ କରିଛନ୍ତି ବେବି। ସ୍ୱାମୀ ପାଖରୁ ଗୋଇଠା ମାଡ ଖାଇଛନ୍ତି, ଝିଙ୍ଗାସ ସହିଛନ୍ତି, ଖାଇବାକୁ ନପାଇ ପେଟ ବିକଳରେ ଅନ୍ୟର କାମ କରିଛନ୍ତି। ତଥାପି ସ୍ୱାମୀ ମନ ବୁଝିନାହିଁ। ପରିଶେଷରେ ସ୍ୱାମୀଙ୍କୁ ଛାଡି ଦେବାର ସିଦ୍ଧାନ୍ତ ନେଇଛନ୍ତି ସେ। ପରିବାର ଓ ସମାଜର ଲୋକେ କହିଛନ୍ତି, ହଁ ମ! କାହାଘରେ ଝଗଡା ହୁଏନାହିଁ। ତା'ବୋଲି କ'ଣ ସ୍ୱାମୀଙ୍କୁ ସ୍ତ୍ରୀ ଛାଡି ପଳାଇବ। ବେବି ନିଜ ସିଦ୍ଧାନ୍ତରେ ଅଟଳ ରହିଛନ୍ତି। ପରିବାର ଓ ବନ୍ଧୁମାନଙ୍କର ପରାମର୍ଶକୁ ଖାତିର୍ କରିନାହାଁନ୍ତି। ବାପାଙ୍କ ପାଖରେ ଆସି ରହିଛନ୍ତି ଦୁର୍ଗାପୁରରେ। ସେଠୁ କାମଦାମ ତଲାସରେ ଫରିଦାବାଦ ଓ ଶେଷରେ ଗୁରଗାଓଁ ରାସ୍ତା କଡର ଝୋପଡିରେ ତିନି ପିଲାଙ୍କୁ ସାଙ୍ଗରେ ଧରି ରହିଛନ୍ତି। ଯା'ଘରେ ତା' ଘରେ ଝାଡୁପୋଛା, ବାସନ ମଜା, ରୋଷେଇ କରିବା, ବଗିଚା ସଫାପରି କାମ କରିଛନ୍ତି। ଘରେ କାମ କରୁଥିବା ଚାକରାଣୀ ପ୍ରତି ଆମର ଯେଉଁ ମଧ୍ୟବିତ୍ତ ମାନସିକତା ତା'ର ଶିକାର ବେବି। ଆତ୍ମସମ୍ମାନ ବୋଲି ଚାକରାଣୀର କିଛି ନଥାଏ।

ସେ ପଇସା ନେଇ କାମ କରୁଥିବା ଏକ ଯନ୍ତ୍ର। ଆମର ତଥାକଥିତ ମାଲିକାଣୀମାନେ ଚାକରାଣୀକୁ ଭାବନ୍ତି କାଠରେ ଗଢା ଗୋଟେ କଣ୍ଢେଇ। ତାକୁ ଯେମିତି ଚାହିଁଲେ ସେମିତି ବ୍ୟବହାର କରାଯାଇ ପାରିବ। ଇଚ୍ଛା ହେଲା ତ ଅସମ୍ମାନ କରାଯାଇ ପାରିବ, ଅପମାନିତ କରାଯାଇ ପାରିବ, ଲାଞ୍ଛନା ଦିଆଯାଇ ପାରିବ। ଯଦି ସେ ପ୍ରତିବାଦ କରେ, ତାକୁ ଫଂଗେ ଫଂଗେ କାମରୁ ବାହାର କରିଦିଆଯାଇ ପାରିବ। ପେଟ ବିକଳରେ ସେ କାମ କରିବାକୁ ବାଧ୍ୟ। ଏମିତି ଏକ ପରିତ୍ୟକ୍ତ ଜୀବନର ଅନୁଭବ କଥା ଲେଖିଛନ୍ତି ବେବି। ଫରିଦାବାଦ ଏବଂ ଗୁର୍‌ଗାଓଁରେ ଜଣେ ସାଧାରଣ ଚାକରାଣୀର ଜୀବନ କେତେ ଯେ ଦୁଃସହ, ତାହା ତାଙ୍କ ଆତ୍ମଜୀବନରୁ ସ୍ପଷ୍ଟ ଜଣାପଡେ।

ବେବିଙ୍କ ଜୀବନରେ ଏକ ନୂଆ ମୋଡ ଆସିଛି ପ୍ରଫେସର ପ୍ରବୋଧ କୁମାରଙ୍କ ଘରେ କାମ କରିବା ଆରମ୍ଭ କଲାପରେ। ପ୍ରଫେସର ପ୍ରବୋଧ କୁମାର ହେଉଛନ୍ତି ହିନ୍ଦୀ ସାହିତ୍ୟର ପ୍ରବାଦ ପୁରୁଷ ପ୍ରେମଚାନ୍ଦଙ୍କ ନାତି। ଗୋଟିଏ ଦୁଇଟି ଜାଗାରେ କାମ କରି ତିକ୍ତ ଅନୁଭୂତି ଲାଭ କଲାପରେ ବେବି କାମ କରନ୍ତି ପ୍ରବୋଧ କୁମାରଙ୍କ ପାଖରେ। ସ୍ନେହ ଓ ସମ୍ମାନର ସହିତ ବେବି ପ୍ରବୋଧ କୁମାରଙ୍କୁ ଡାକନ୍ତି ତାତୁସ୍ ବୋଲି। ତାତୁସ୍ ଥିଲେ ବେବିଙ୍କ ଜୀବନରେ ବାପାଙ୍କ ପରି। ସାନ ଝିଅକୁ ବାପା ଯେମିତି ବୁଝେ, ପ୍ରଫେସର ସେମିତି ବୁଝୁଥିଲେ ବେବିଙ୍କୁ। କାମ କରୁଥିବା ଘରୋଇ ଚାକରାଣୀ ଟିକିଏ ସମୟ ମିଳିଲେ କ'ଣ ପଢୁଛି ବା ଲେଖୁଛି ଏହା ତାଙ୍କ ଦୃଷ୍ଟିରୁ ବାଦ୍ ପଡିନଥିଲା। ବେବି ପ୍ରଥମେ ପ୍ରଥମେ ରାସ୍ତା କଡର ଝୋପଡିରେ ରହୁଥିଲେ ଏବଂ ପ୍ରଫେସରଙ୍କ ଘରେ ଆସି କାମ କରୁଥିଲେ। ହଠାତ୍ ଦିନେ ସେ ଘର ବି ଭାଙ୍ଗିଗଲା ମ୍ୟୁନିସିପାଲିଟିର ବୁଲ୍‌ଡୋଜର ମାଡରେ। ନିରାଶ୍ରମୟ ବେବି ଓ ତାଙ୍କର ପିଲାମାନେ ଆଶ୍ରା ପାଆନ୍ତି ତାତୁସ୍‌ଙ୍କ ଘରେ। ଏହି ଘରେ ଏକା ଜନ୍ମନିଏ ଲେଖିକା ବେବି ହାଲ୍‌ଦାର। ବେବି ନିଜେ କୁହନ୍ତି, ତାତୁସ୍ ତାଙ୍କ ପଢା ପଢି ଓ ଲେଖାଲେଖିକୁ ନେଇ ଖୁବ୍ ଉତ୍ସାହିତ ଥିଲେ। ନିଜର ଜୀବନ କାହାଣୀ ଲେଖିବା ପାଇଁ ବାରମ୍ବାର ବ୍ୟସ୍ତ କରିଛନ୍ତି ବେବିଙ୍କୁ। ପ୍ରଥମେ କେତୋଟି ବଙ୍ଗଳା ପତ୍ରିକାରେ ପ୍ରକାଶିତ ହୋଇଛି ବେବିଙ୍କ ଜୀବନ କାହାଣୀ। ପ୍ରକାଶିତ ହେଲା ପରେ ପରେ ଆରମ୍ଭ ହୋଇଛି ଚର୍ଚ୍ଚା। ସମାଜର ଅନ୍ତିମ ଧାଡିରୁ ଯେଉଁ ଅନୁଭବ ସାହିତ୍ୟକୁ ଆସିଛି, ସେଥିରେ କିଛି ସମୟ ପାଇଁ ଚମକି ଯାଇଛନ୍ତି ଆମର ଶିଷ୍ଟ ଓ ସମ୍ଭ୍ରାନ୍ତମାନେ। ନିମ୍ନବର୍ଗର ଜୀବନ କାହାଣୀ ପାଠକମାନଙ୍କୁ ଆପ୍ଲୁତ କରିଛି। ନିଜେ ପ୍ରବୋଧ କୁମାର ହିନ୍ଦୀରେ ବେବିଙ୍କ ଜୀବନ କାହାଣୀକୁ ଅନୁବାଦ କରିଛନ୍ତି। ୨୦୦୨ରେ ପ୍ରଥମେଆଲୋ-ଅଁଧାରୀ ପ୍ରକାଶ ପାଏ ହିନ୍ଦୀରେ। ତା'ପରେ ବଙ୍ଗଳାରେ ପ୍ରକାଶିତ ହୋଇ ସବୁଠୁ ଚର୍ଚ୍ଚିତ ବହିର ମାନ୍ୟତା

ପାଏ। ଏବେ ଇଂରାଜୀରେ 'ଏ ଲାଇଫ୍ ଲେସ୍ ଅର୍ଡିନାରୀ' ପ୍ରକାଶିତ ହେଲା ପରେ ବେବି ଆମ ସମୟର ଜଣେ ପ୍ରସିଦ୍ଧ ଲେଖିକା ଭାବରେ ପ୍ରତିଷ୍ଠା ଲାଭ କରିଛନ୍ତି। ଅରୁନ୍ଧତୀ ରାୟ, ତସଲିମା ନସ୍‌ରିନ୍‌ଙ୍କ ପରି ଲେଖିକା ଏବେ ତାଙ୍କର ପ୍ରିୟ ବାନ୍ଧବୀ।

ଏତେ କାମଦାମ ଭିତରେ ଲେଖିବା ପାଇଁ ସମୟ ମିଳେ କେମିତି ? ଉତ୍ତରରେ ବେବି କହନ୍ତି, ତାଙ୍କର ପ୍ରିୟ ଲେଖିକା ଆଶାପୂର୍ଣ୍ଣା ଦେବୀ ଦିନସାରା ପରିବାରର ଜଂଜାଳ ମୁଣ୍ଡାଇ ସାରିଲା ପରେ ରାତିରେ ଲେଖାଲେଖି କରୁଥିଲେ। ସେମିତି ଟିକିଏ ସମୟ ପାଇଲେ ବେବି ହାତରେ କାଗଜ ଓ କଲମ ଧରି ବସିଯାନ୍ତି। ଏବେ ଲେଖାଲେଖି ତାଙ୍କୁ ଏକ ନୂଆ ପରିଚୟ ଦେଇଛି। ତାଙ୍କ ପିଲାମାନେ ନିଜ ମା'ର ପରିଚୟକୁ ନେଇ ଗର୍ବିତ ହେବେ ଏଇଟା ହିଁ ତାଙ୍କ ଜୀବନର ସବୁଠୁ ବଡ ସଫଳତା ବୋଲି ବେବି କହନ୍ତି। ତାଙ୍କ ବଡପୁଅ ଯିଏ ସବୁଠୁ ବେଶୀ ଦୁଃଖ ସମୟରେ ବଢିଥିଲା ଓ ଅନ୍ୟମାନଙ୍କ ଘରେ ଚାକର ଭାବରେ କାମ୍ କରୁଥିଲା, ଏବେ ଫାଇଭ୍ ଷ୍ଟାର୍ ହୋଟେଲ୍‌ରେ ରୋଷେଇଆ ଭାବରେ ତାଲିମ୍ ନେଉଛି। ତା'ତଳଝିଅ ଡାକ୍ତରୀ ପଢିବା ପାଇଁ ପ୍ରୟାସ କରୁଛି। ସାନ ପୁଅର ଇଚ୍ଛା ଅଛି ସେ ପାଇଲଟ୍ ହେବ। ସେମାନଙ୍କ ସ୍ୱପ୍ନ ସହିତ ନିଜକୁ ଜୋଖିଛନ୍ତି ବେବି। ପିଲାମାନେ ବଡ ହେବେ, ପାଠ ପଢିବେ ଏବଂ ମୁକ୍ତ ଜୀବନଟିଏ ଜିଇଁବେ ଏଇଟା ତାଙ୍କର ସବୁଠୁ ବଡ ଅଭିଳାଷ। ଏବେ ତାଙ୍କ ଆତ୍ମଜୀବନୀର ଅନ୍ୟାନ୍ୟ ଅନୁଭବକୁ ସେ ଲେଖିବାରେ ବ୍ୟସ୍ତ ଅଛନ୍ତି। ଆଶା କରାଯାଉଛି, ବେବି ହାଲ୍‌ଦାର ଏକବିଂଶ ଶତାବ୍ଦୀର ସାଧାରଣ ମଣିଷର ପ୍ରତିନିଧି ଭାବରେ ପୃଥିବୀ ସାହିତ୍ୟକୁ ଏକ ନୂତନ ଦିଶା ଦେବେ।



# କବିତାର ମନ୍ତ୍ରସିଦ୍ଧ ଋଷିପୁତ୍ର ଓ ଲୋକଜୀବନର ଉଦ୍‌ଗାତା   ଲୋକକବି ହଳଧର ନାଗ

ପୃଥିବୀ ଓ ଚନ୍ଦ୍ରମା ଦୁଇ ଭାଇ-ଭଉଣୀ। ପୃଥିବୀ ଅପରୂପା ସୁନ୍ଦରୀ। ଯୌବନପ୍ରାପ୍ତି ପରେ ପୃଥିବୀ ସମୟର ପ୍ରେମରେ ପଡିଗଲେ। ସମୟ ଓ ପୃଥିବୀର ପ୍ରଣୟ କାହାଣୀ ଗଡ଼ି ଚାଲିଲା ଗୋପନରେ। ଭଉଣୀର ପ୍ରଣୟ କାହାଣୀ ବିଷୟ ନଜାଣି ଚନ୍ଦ୍ରମା ଦିନେ ଦେବ ସଭାରେ ପ୍ରସ୍ତାବ କଲେ ତାଙ୍କ ଭଉଣୀ ପୃଥିବୀ ସହ ଦେବରାଜ ଇନ୍ଦ୍ରଙ୍କ ପରିଣୟ ପାଇଁ। ଅସାମାନ୍ୟ ରୂପସୀ  ପୃଥିବୀକୁ ବାହା ହେବା ପାଇଁ ଦେବସଭାରେ ନିଷ୍ପତ୍ତି ହୋଇଗଲା। ଏ ଖବର ପାଇବା ମାତ୍ରେ ଭୟ ଓ ଆଶଙ୍କାରେ କାତର ପୃଥିବୀ ଚନ୍ଦ୍ରମାଙ୍କୁ ଝିଙ୍ଗାସ କଲେ ଏବଂ ସେ ସମୟ  ସହ ପ୍ରଣୟବଦ୍ଧ ବୋଲି ଜଣାଇଦେଲେ। ବିଚଳିତ ଚନ୍ଦ୍ରମା ଏବେ କରନ୍ତି କ'ଣ ? ଦେବରାଜଙ୍କୁ କହିଲେ, 'ମହାରାଜ ! ମୋ ସାନ ଭଉଣୀ ଏବେ ମହାକାଳ ପ୍ରେମରେ ପଡିଯାଇଛି।' କ୍ରୋଧିତ ଇନ୍ଦ୍ର ନିଜ ବଜ୍ର ମାଧ୍ୟମରେ ସମୟକୁ ଖଣ୍ଡ ଖଣ୍ଡ କରି ହତ୍ୟା କଲେ।

ପ୍ରିୟତମର ମୃତ୍ୟୁରେ ଶୋକାତୁରା ପୃଥିବୀ ବିଳାପ କରିବାକୁ ଲାଗିଲେ। ତାଙ୍କ ବିଳାପରେ ଲୋକପିତା ବ୍ରହ୍ମାଙ୍କ ଆସନ ଟଳମଳ ହେବାକୁ ଲାଗିଲା। ବ୍ରହ୍ମା ପୃଥିବୀକୁ ପଚାରିଲେ- 'ତମେ ରୋଦନ କରୁଛ କାହିଁକି ?' ପୃଥିବୀ ତାଙ୍କ ଦୁଃଖ ବୟାନ କଲେ। ଲୋକପିତା କହିଲେ- 'ମୁଁ ନିଷ୍ଚିତ ଭାବରେ ତମ ପ୍ରେମିକକୁ ବଞ୍ଚାଇଦେବି।' ତା'ପରେ ବ୍ରହ୍ମା ତାଙ୍କ କମଣ୍ଡଳରୁ ଅମୃତ ଜଳ ସିଞ୍ଚି ସମୟକୁ ଜୀବନ୍ୟାସ ଦେଲେ। କିନ୍ତୁ ଏ କ'ଣ ? ଇନ୍ଦ୍ରଙ୍କ ବଜ୍ରାଘାତରେ ସମୟ ଛଅ ଖଣ୍ଡ ହୋଇଯାଇଛି ଏବଂ ଅମୃତ ଜଳ ପାଇଲା ପରେ ସମୟର ଛଅଟି ସ୍ୱରୂପ ପୃଥିବୀକୁ ପ୍ରଣୟ  ଭିକ୍ଷା କରୁଛନ୍ତି। ପୃଥିବୀ କହିଲେ- 'ଏ କି ଆଚମ୍ବିତ କଥା ? ଜଣେ ନାରୀ ଛଅ ପୁରୁଷଙ୍କ ସହ ଜୀବନ କଟେଇବ କେମିତି ?' ବ୍ରହ୍ମା କହିଲେ- 'ତମେ ବିଚଳିତ ହୁଅ ନାହିଁ। ସେମାନେ ସମୟର ଛଅଟି ସ୍ୱରୁପ- ଛଅଟି ଋତୁ'। ଜଣେ ପରେ ଜଣେ ସେମାନେ ତମ ପାଖକୁ ଆସିବେ ଓ ଦୁଇ

ମାସ ଲେଖାଏଁ ତମକୁ ଭୋଗ କରିବେ। ସେହି ଦିନଠୁ ଛଅ ଋତୁ କ୍ରମାନ୍ୱୟରେ ପୃଥିବୀ ପୃଷ୍ଠକୁ ଆସନ୍ତି ଓ ପୃଥିବୀ ରାଣୀକୁ ଭୋଗ କରନ୍ତି।

ଇଏ କାହାଣୀ ନା କବିତା? କେଉଁ ପୁରାଣରେ ଆପଣ ପଢ଼ିଛନ୍ତି ଏ କାହାଣୀ? କବିର କଳ୍ପନାରେ ସମୟ ଓ ପୃଥିବୀର ପ୍ରଣୟ କାହାଣୀ ନୂଆ ରୂପେ ଗଢ଼ାଯାଇଛି। ସମ୍ବଲପୁରୀ-କୋଶଲୀ ଭାଷାରେ ରଚିତ 'ବଛର' ନାମକ କାବ୍ୟର କାହାଣୀ ଇଏ। କାବ୍ୟର କବି ହେଉଛନ୍ତି ଶ୍ରୀଯୁକ୍ତ ହଳଧର ନାଗ। କବିର ପ୍ରତିଭା ଓ କଳ୍ପନାର ଏକ ଅପୂର୍ବ ବିଭୂତିର ଅନ୍ୟ ନାମ କବି ହଳଧର ନାଗ। ସମଗ୍ର ପଶ୍ଚିମ ଓଡ଼ିଶାରେ ଲୋକ କବି ଭାବରେ ବିଖ୍ୟାତ ଏଇ କବି ଆମ ସମୟର ଏକ ବିରାଟ ଆଶ୍ଚର୍ଯ୍ୟ। ଯେଉଁ ସମୟରେ କବିତାର ପାଠକ ଏକ ବିରଳ ପ୍ରଜାତିରେ ପରିଣତ ହୋଇସାରିଛି, ସେହି ସମୟରେ କବି ହଳଧରଙ୍କ କବିତା ଶୁଣିବା ପାଇଁ ହଜାର ହଜାର ଲୋକ ଅପେକ୍ଷା କରି ରହନ୍ତି ମଞ୍ଚ ଆଗରେ। ଘଣ୍ଟା ଘଣ୍ଟା ଧରି କବିତା ଆବୃତ୍ତି କରନ୍ତି କବି। ତାଙ୍କ ହାତରେ ପାଣ୍ଡୁଲିପି ନଥାଏ। ହଜାର ହଜାର ପୃଷ୍ଠାର କବିତା ତାଙ୍କର ମୁଖସ୍ଥ ଥାଏ। ଆତ୍ମବିଭୋର, କବିତା ବିଭୋର କବିଙ୍କୁ ଶୁଣିବା ପାଇଁ ଯାତ୍ରା ପରି ଗହଳି ଲାଗିଯାଏ ପଶ୍ଚିମ ଓଡ଼ିଶାରେ।

ହଳଧର ନାଗ, ଦେଖିବାକୁ ଡେଙ୍ଗା, କଳା, ନହନହକା ମଣିଷଟିଏ। ଭାବପ୍ରବଣ ଦୁଇଟି ଆଖି। ବବୁରି ବାଳ ଲମ୍ବି ଯାଇଥାଏ ପଛକୁ। ଅଣ୍ଟାରେ ବେଢାଇ ହୋଇଥାନ୍ତି ଧଳା ଧୋତିଟିଏ, କାନ୍ଧରେ ଗାମୁଛା, ପାଦରେ ଚପଲ ନଥାଏ। ଦେଖିଲେ ଅତି ସାଧାରଣ ଗାଉଁଲି ମଣିଷଟିଏ। ସାଧାରଣ ଚେହେରା ତଳେ ଏକ ଅସାଧାରଣ ପ୍ରତିଭାର ଜ୍ୟୋତି ଉଦ୍‌ଭାସିତ ହେଉଥାଏ ତାଙ୍କ ଆଖି ଦିଓଟିରେ। ଅତ୍ୟନ୍ତ ନମ୍ର ଏବଂ ବିନୟୀ ସ୍ୱଭାବର କବି ହଳଧର ନାଗଙ୍କୁ ଦେଖିଲେ ଲାଗେନା ତାଙ୍କର ଗ୍ରନ୍ଥାବଳୀ ପ୍ରକାଶିତ ହୋଇଛି ଗ୍ରନ୍ଥ ମନ୍ଦିର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତରଫରୁ। ତାଙ୍କୁ ନେଇ 'ବିବିସି' ତିଆରି କରିସାରିଛି ଗୋଟିଏ ସିନେମା। ତାଙ୍କୁ ନିମନ୍ତ୍ରଣ ନକଲେ ପଶ୍ଚିମ ଓଡ଼ିଶାର କୌଣସି କାର୍ଯ୍ୟକ୍ରମ ପୂର୍ଣ୍ଣାଙ୍ଗ ହୁଏନା। ତାଙ୍କୁ ଦେଖିଲେ ବହୁ ବିଦ୍ୱାନ ହାତଯୋଡ଼ି ସମ୍ମାନ କରନ୍ତି। ଅଥଚ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ହଳଧର ନାଗଙ୍କ ଆନୁଷ୍ଠାନିକ ଶିକ୍ଷା। ବୃତ୍ତିରେ ସେ ଚନାଚୁରବାଲା। କେବେ କେମିତି ଚାଷ କାମ କରନ୍ତି। ଗାଁ ସ୍କୁଲରେ ଭାରରେ ପାଣି ବୋହି ଦିଅନ୍ତି। କିନ୍ତୁ କବିତାର ସେ ଏକ ଜ୍ୟୋତିର୍ମୟ ଅବତାର।

କବି ହଳଧର ନାଗଙ୍କ ଜନ୍ମ ୩୧.୩.୧୯୫୦ ବରଗଡ ଜିଲ୍ଲାର ଘେଁସ୍ ଗାଁରେ। ଘେଁସ୍ ପଶ୍ଚିମ ଓଡ଼ିଶାର ଏକ ଐତିହାସିକ ଗାଁ। ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ବ୍ରିଟିଶରାଜ ବିରୁଦ୍ଧରେ ହୋଇଥିବା ସଶସ୍ତ୍ର ଆନ୍ଦୋଳନର ତୀର୍ଥ ଭୂମି ହେଉଛି ଘେଁସ୍। ଏକ ଐତିହାସିକ

ଗାଁର ଅତି ସାଧାରଣ ବାଳକଟିଏ ଅସାଧାରଣ ଇତିହାସ ରଚନା କରିବ ଏକଥା ଘେଁସ୍ ଗାଁର କେହି କେବେବି କଳ୍ପନା କରିନଥିବେ। ଲୋକଗୀତ ଏବଂ ଲୋକନୃତ୍ୟ ପ୍ରତି ପିଲାଦିନରୁ ହଳଧରଙ୍କ ଥିଲା ପ୍ରଚୁର ଆଗ୍ରହ। ରାମାୟଣ, ମହାଭାରତ ଶୁଣି ଶୁଣି ଡାଲଖାଇ, ରସରକେଲି, ଗୁଣ୍ଣୁ ଗୁଣେଇ ଆରମ୍ଭ ହୋଇଥିଲା ତାଙ୍କ କବିତ୍ୱର ଯାତ୍ରା। ଅଳ୍ପ ପାଠୁଆ ତାଙ୍କ ମନ ଓ ହୃଦୟକୁ ନିଜର ନିବାସ ରୂପେ ବାଛି ନେଇଥିଲେ କବିତାର ସରସ୍ୱତୀ। ଆପେ ଆପେ ଆପଣାଛାଏଁ ସେ ଆବୃତ୍ତି କରୁଥିଲେ ସୁକୁମାର କବିତା। ତାଙ୍କ ଆଗରେ ପ୍ରେରଣାର ଉତ୍ସ ଥିଲେ ବ୍ୟାସ, ବାଲ୍ମିକୀ, ଗଙ୍ଗାଧର ମେହେର ଓ ଭୀମ ଭୋଇ। ତାଙ୍କ କାବ୍ୟ ସିଦ୍ଧି ଗୋଟିଏ କଥା ପ୍ରମାଣିତ କରେ, ତା ହେଲା- କବିତାର ଉତ୍ସ ସବୁବେଳେ ସ୍ୱାଭାବିକ ଏବଂ କବିତା ରଚନା କୌଣସି ବୌଦ୍ଧିକ କସରତର ଆବଶ୍ୟକତା ରଖେ ନାହିଁ।

ତାଙ୍କ କବିତାରେ ପଶ୍ଚିମ ଓଡ଼ିଶାର ଜନଜୀବନ, ପ୍ରାକୃତିକ ପରିବେଶ, ଚଳଣୀ, ପରଂପରା, ଲୋକଗୀତ ଓ ଲୋକନୃତ୍ୟର ଛନ୍ଦ ଏବଂ ସର୍ବୋପରି ଜୀବନର ଉଦ୍ଦାମତା ପ୍ରତିଫଳିତ ହୋଇଥାଏ। କାବ୍ୟ ଓ ପୁରାଣରୁ ବିଷୟବସ୍ତୁ ଚୟନ କରୁଥିଲେ ହେଁ ବର୍ଣ୍ଣନା ଏବଂ ସର୍ଜନା କ୍ଷେତ୍ରରେ ତାଙ୍କ ଶୈଳୀ ମୌଳିକ। ଆଞ୍ଚଳିକ ଅସ୍ମିତାର ଉଦ୍‌ଗାତା ରୂପେ ଏବେ ସମଗ୍ର ପଶ୍ଚିମ ଓଡ଼ିଶାରେ ହଳଧର ନାଗ ସଂସ୍କୃତିର ଦେବଦୂତ ପାଲଟି ଯାଇଛନ୍ତି। ଆଞ୍ଚଳିକ ସଂସ୍କୃତିର ପ୍ରାଣବନ୍ତ ପ୍ରତୀକ ତାଙ୍କର କବିତା।

ପଶ୍ଚିମ ଓଡ଼ିଶାର ବିଶେଷ ଚର୍ଚ୍ଚା ହୋଇଥାଏ ଏ ଅଞ୍ଚଳର ଦାରିଦ୍ର୍ୟ, ଅନାହାର ମୃତ୍ୟୁ, ଦାଦନ ଶ୍ରମିକ ଓ ପିଲାବିକ୍ରୀ ଇତ୍ୟାଦି ପ୍ରସଙ୍ଗ ପାଇଁ। ତେଣୁ ଏ ଅଞ୍ଚଳକୁ ନେଇ ଯେଉଁମାନେ କବିତା ଲେଖନ୍ତି ବା ଏ ଅଞ୍ଚଳରେ ରହି କବିତା ଲେଖନ୍ତି ସେମାନଙ୍କ ପାଇଁ କବିତାର ବିଷୟବସ୍ତୁ ପ୍ରାୟ ପୂର୍ବନିର୍ଦ୍ଧାରିତ। ସ୍ଥିତାବସ୍ଥା ବିରୁଦ୍ଧରେ ହେଉ କିମ୍ବା ଏକ ନୂତନ ଆନ୍ଦୋଳନର ସୂଚନା ହେଉ କବିତାରେ ତାର ସଂକେତ ରହିଥାଏ। ଯଦିଓ ଆଧୁନିକ ଓଡ଼ିଆ କବିତାର ଅସ୍ପଷ୍ଟ, ରହସ୍ୟମୟ ଏବଂ ଦୁର୍ବୋଧ୍ୟ ପରଂପରାରେ ଏସବୁ ସ୍ୱରର ବିଶେଷ କିଛି ମାନେ ନଥାଏ। ପରଂପରାର ମୁଖ୍ୟସ୍ରୋତରେ ଗୌଣସ୍ରୋତର ଭାବାବେଗ ପ୍ରାୟତଃ ବିଲୀନ ହୋଇଯାଏ। ସୌଭାଗ୍ୟକ୍ରମେ ହଳଧରନାଗଙ୍କ କବିତା ଏହି ଦୁର୍ଭାଗ୍ୟଜନକ ପରିଣତି ଭୋଗି ନାହିଁ।

ପ୍ରାୟତଃ ପୁରାଣ, କାବ୍ୟ ଓ କଳ୍ପନାର ଆଧାରରେ ତାଙ୍କ କବିତ୍ୱର ପ୍ରତିଷ୍ଠା। ତେଣୁ ଆଧୁନିକତା କିମ୍ବା ଉତ୍ତର ଆଧୁନିକତାର ବ୍ୟୁହ ଭିତରେ ବାଟବଣା ଆଲୋଚକମାନଙ୍କ ପାଇଁ ତାଙ୍କ କବିତା ପାରଂପରିକ କିମ୍ବା ପ୍ରାଚୀନପନ୍ଥୀ ମନେ ହୋଇପାରେ। କିନ୍ତୁ ଟିକେ

ଗଭୀର ଭବରେ ତାଙ୍କ କବିତାକୁ ଅନୁଧ୍ୟାନ କଲେ ଗୋଟିଏ କଥା ସ୍ପଷ୍ଟ ହୋଇଯାଏ ଯେ, କଳ୍ପନା ଏଠି ବିଦ୍ରୋହର ଏକ ଛଦ୍ମ ଆୟୁଧ। ଶୋଷଣ ଓ ଅବହେଳାର ନିଶାଗ୍ରସ୍ତ ଗୋଟିଏ ଅଞ୍ଚଳର ଜନଜୀବନରେ ଚାଞ୍ଚଲ୍ୟ ଖେଳାଇବା ପାଇଁ ପୌରାଣିକ କଳ୍ପନାକୁ ଆଧାର ଭାବରେ ଗ୍ରହଣ କରିବା ଛଡା ଅଲଗା ବାଟ ନଥାଏ। ପୌରାଣିକ କଳ୍ପନା ଆଧାରରେ ଜାତୀୟ ଅସ୍ମିତାର ପ୍ରତିଷ୍ଠା ପାଇଁ କାବ୍ୟିକ ପ୍ରୟାସ କରିଥିବା ଶାରଳା ଦାସ, ଭୀମ ଭୋଇ, ଗଙ୍ଗାଧର ମେହେରଙ୍କ ପରି ହଳଧର ନାଗ ସେଇ ବିଷୟବସ୍ତୁ ଓ ଶୈଳୀର ଚୟନ କରିଛନ୍ତି। ତାଙ୍କ ବର୍ଣ୍ଣନାରେ ପଶ୍ଚିମ ଓଡ଼ିଶାର ଜୀବନ୍ତ ଚିତ୍ର ପାଠକର ଆଖି ଆଗରେ ଚଳଚ୍ଚିତ୍ର ପରି ଭାସି ଉଠେ। ତାଙ୍କ କଳ୍ପନା ସାମର୍ଥ୍ୟ କ୍ଲାସିକ୍ କବିମାନଙ୍କର ସାମର୍ଥ୍ୟ ସହ ପ୍ରାୟ ସମାନ।

ଏହି ଯଶସ୍ୱୀ କବିଙ୍କର କେତୋଟି ମୁଖ୍ୟ କାବ୍ୟଗ୍ରନ୍ଥ ହେଉଛି– 'ବଛର୍', 'ମହାସତୀ ଉର୍ମିଳା', 'ତାରା ମନ୍ଦୋଦରୀ', 'ରସିଆ କବି', 'ଅଛିଆ', 'ସିରି ସମଲାଇ' ଇତ୍ୟାଦି। ସରଳ ମନରେ ଯେଉଁ ଅପୂର୍ବ ଆଧ୍ୟାତ୍ମିକ ଦର୍ଶନର୍ ଉଦ୍‌ଭାସ ସମ୍ଭବ ହୁଏ ତାହା କବିତାରେ ହିଁ ପ୍ରତିଫଳିତ ହୋଇଥାଏ। ଏକ ନଗଣ୍ୟ ଉପଭାଷା ବୋଲି ଗଣାଯାଉଥିବା ସମ୍ବଲପୁରୀ-କୋଶଲୀ ଭାଷାରେ ଯେଉଁ ବୌଦ୍ଧିକ ଉଚ୍ଚତାର କାବ୍ୟ ରଚନା ହୋଇଛି, ତାହା ସେ ଭାଷାର ଉତ୍କର୍ଷ ଓ ମୌଳିକତାର ପରିଚୟ। ଓଡ଼ିଶା ଭାଷା ସହ ସମାନ୍ତରାଳ ଭାବେ ସମ୍ବଲପୁରୀ-କୋଶଳୀର ଏହି ପ୍ରତିଷ୍ଠାକୁ ନକାରାତ୍ମକ ଦୃଷ୍ଟିରେ ନଦେଖିଲେ ଓଡ଼ିଆ ସାହିତ୍ୟର ଯଥେଷ୍ଟ ମଙ୍ଗଳ ହେବ।

କବି ହଳଧରଙ୍କ କାବ୍ୟକୃତିରେ ସବୁଠୁ ଉଲ୍ଲେଖନୀୟ ଦିଗଟି ହେଉଛି ତାଙ୍କ ଭାଷା ପ୍ରୟୋଗର ଅପୂର୍ବ ସ୍ୱତଃସ୍ଫୂର୍ତ୍ତତା। ପୁରାଣରେ ବର୍ଣ୍ଣିତ ବ୍ୟାସଙ୍କ ଶ୍ରୁତଲିଖନ ଓ ଗଣେଶଙ୍କ ଲିଖନ ପରି ତାଙ୍କର କାବ୍ୟଧାରା। ହଳଧରଙ୍କ କାବ୍ୟକୃତିରେ ଏତେ ଟିକିଏ ବି ଦୁର୍ବୋଧ୍ୟତା ବା ଜଟିଳତା ନଥାଏ। ତାଙ୍କ ନିରୀହତା ପରି କବିତାର ଆବେଦନ ମଧ୍ୟ ନିରୀହ ଓ ରସମୟ। ପଶ୍ଚିମ ଓଡ଼ିଶାର ପ୍ରାକୃତିକ ସୌନ୍ଦର୍ଯ୍ୟ, ଜନଜୀବନର ଆଚାର, ଆଚରଣ, ପରଂପରା ଓ ସଂସ୍କୃତି ସୌନ୍ଦର୍ଯ୍ୟବୋଧ ଏବଂ ଭାରତୀୟ ଆଧ୍ୟାତ୍ମିକତାର ସରଳ ପରିବେଷଣ ତାଙ୍କ ରଚନାର ଶ୍ରେଷ୍ଠତମ ସିଦ୍ଧି। ତା ସହ ତାଙ୍କ କବିତାରେ ଥାଏ ଶାଣିତ ଶ୍ଲେଷ ଓ ତୀବ୍ର କଟାକ୍ଷ। ବେଳେ ବେଳେ ବ୍ୟଙ୍ଗ କବିତା ରଚନାରେ ହାତ ଦିଅନ୍ତି କବି। ଓଡ଼ିଆ ବ୍ୟଙ୍ଗ କବିତାର ପ୍ରଚଳିତ ଧାରାଠୁ ଭିନ୍ନ ଶୁଦ୍ଧ ଶ୍ଲେଷ ଓ ବ୍ୟଞ୍ଜନାର ପରିବେଷଣ ତାଙ୍କ ବ୍ୟଙ୍ଗ କବିତାର ବିଶେଷ ଗୁଣ। ସ୍ଲୋଗାନଧର୍ମୀ ସମାଲୋଚନା ତାଙ୍କର ଏକ ଉଲ୍ଲେଖନୀୟ ସଫଳତା।

ହଳଧରଙ୍କ କାବ୍ୟ ସାହିତ୍ୟ ଉପରେ ଏବେ ବହୁ ଗବେଷଣା ଆରମ୍ଭ ହୋଇ ସାରିଛି। ପଶ୍ଚିମ ଓଡ଼ିଶାର ଛୋଟବଡ ଗାଁ, ସହରମାନଙ୍କରେ କବିଙ୍କୁ ବିପୁଳ ସ୍ୱାଗତ ସମ୍ବର୍ଦ୍ଧନା ପ୍ରଦାନ କରାଯାଉଛି। ହଳଧରଙ୍କ କବିତା ସଂଧ୍ୟା ଏବେ ମନୋରଂଜନର ଏକ ପରିଶୁଦ୍ଧ ସ୍ୱରୂପ। ତାଙ୍କ କବିତା ବହିର ଗ୍ରାହକ ଆମର ତଥାକଥିତ ପ୍ରତିଷ୍ଠିତ କବିମାନଙ୍କ ଠାରୁ ବହୁଗୁଣରେ ଅଧିକ। କିନ୍ତୁ ଦୁଃଖର କଥା ଓଡ଼ିଆ ସାହିତ୍ୟର ଆଲୋଚକ ଏବଂ ଐତିହାସିକମାନେ ତାଙ୍କ ପ୍ରତିଭା ବିଷୟରେ ପ୍ରାୟ ଉଦାସୀନ। କାବ୍ୟ ରଚନା ଏବଂ ସାହିତ୍ୟ କର୍ମରେ ବିଶେଷ ରୁଚି ରଖୁଥିବା ଓଡ଼ିଆ ଭାଷାର ଦିଗ୍ଗଜମାନେ ହଳଧରନାଗଙ୍କ ବିଷୟରେ ବିଶେଷ କିଛି ଜାଣନ୍ତି ନାହିଁ। ଲୋକ ଏବଂ ପାଠକଠାରୁ ସ୍ୱୀକୃତି ପାଇବା ଜଣେ କବି ଜୀବନର ସବୁଠୁ ବଡକଥା। କିନ୍ତୁ ଆମ ସାହିତ୍ୟ ଏକାଡେମୀ ବା ତଥାକଥିତ ସାହିତ୍ୟର ପ୍ରମୁଖ ସଂସ୍ଥାନମାନେ ହଳଧର ନାଗଙ୍କ ବିଷୟରେ କିଛି ଜାଣନ୍ତି କି? ଏହି ଯଶସ୍ୱୀ କବିଙ୍କୁ ସମ୍ବର୍ଦ୍ଧିତ ଓ ସମ୍ମାନୀତ କରିବା ପ୍ରତ୍ୟେକ ଓଡ଼ିଆ ପାଇଁ ଗୌରବର ବିଷୟ ହେବା ଉଚିତ୍ ନୁହେଁ କି?



# ପରଦା ତଳର ଆଗ୍ନେୟଗିରି
# ପାକିସ୍ତାନୀ କବୀ ଆତିୟା ଦାଉଦ

ତମକୁ ଯଦି କିଏ କେବେ ଦୁଃଖ ଦିଏ

ତାର ନାଁ ରଖିବ ଝିଅ।

ଏକଦା ପାକିସ୍ତାନର ଚର୍ଚ୍ଚିତ କବିୟିତ୍ରୀ ସରା ଶାଗୁଫ୍‌ତାଙ୍କ କବିତାର ଧାଡି ଇଏ। ଇସ୍‌ଲାମ ଏବଂ ମୌଳବାଦୀ କଠୋର ଶାସନ ତଳେ ଶୋଷିତ ପାକିସ୍ତାନୀ ନାରୀର ଅନ୍ତର୍ବେଦନା ତଥା ଯନ୍ତ୍ରଣା ଫୁଟି ଉଠିଛି ପାକିସ୍ତାନର ନାରୀ କବିମାନଙ୍କ କଲମରେ। ଶିକ୍ଷା ଓ ସାମାଜିକ ସ୍ୱୀକୃତି ବିନା ସମାଜର ମୁଖ୍ୟ ସ୍ରୋତରୁ ଦୂରରେ ରହୁଥିବା ପାକିସ୍ତାନୀ ନାରୀର ଅନ୍ତର କଥାକୁ ଭିନ୍ନ ଭିନ୍ନ ସମୟରେ କହିବାର ପ୍ରୟାସ କରିଛନ୍ତି ସେ ଦେଶର କବୟିତ୍ରୀ କିଶ୍ୱର ନାହିଦ୍, ପରଓ୍ୱିନ୍ ସାକିର୍, ଇସ୍‌ରାତ୍ ଆଫ୍‌ରିଁ, ସାରା ଶଗୁଫ୍‌ତା, ଫାହମିଦା ରିୟାଜ୍ ପ୍ରମୁଖ। ସେମାନଙ୍କ କବିତାରେ ଏକ ନୀରବ ବିଦ୍ରୋହର ଅସ୍ପଷ୍ଟ ପଦଧ୍ୱନୀ। ପୁରୁଷ ପ୍ରଧାନ ଇସ୍‌ଲାମିକ୍ ସମାଜରେ ନିଜ ସ୍ଥାନକୁ ସୁରକ୍ଷିତ ରଖିବା ପାଇଁ ତଥା ନିଜର ସ୍ୱାଧୀନତା ଓ ସ୍ୱାଭିମାନ ବଜାୟ ରଖିବାକୁ କଲମକୁ ହିଁ ମାଧ୍ୟମ ଭାବରେ ଗ୍ରହଣ କରିଛି ପାକିସ୍ତାନୀ ନାରୀ। ପାର୍ସି ଏବଂ ଉର୍ଦ୍ଦୁ ଭାଷାରେ ବହୁ ନାରୀ କବି ତାଙ୍କ ସୃଜନଶୀଳତାର ପରିଚୟ ଦେଇଛନ୍ତି। କିନ୍ତୁ ପାକିସ୍ତାନର ଅନ୍ୟତମ ଆଞ୍ଚଳିକ ଭାଷା ସିନ୍ଧିରେ ନାରୀ ଜୀବନର ଯନ୍ତ୍ରଣା ଓ ବେଦନା ବୟାନ କରି ଏବେ ଚର୍ଚ୍ଚିତ ହୋଇଛନ୍ତି କବି ଆତିୟା ଦାଉଦ୍।

ସ୍ୱର୍ଗତ ଲେଖିକା ଅମୃତା ପ୍ରୀତମ୍, ଆତିୟାଙ୍କ ବିଷୟରେ କହିଥିଲେ- 'ଆତିୟା ହେଉଛି ଜଣେ ବାସ୍ତବ କବୀ। ତଙ୍କ କବିତାରେ ଆତ୍ମାର ଝଲକ ଦେଖବକୁ ମିଳେ'। ଅନ୍ୟତମ ପାକିସ୍ତାନୀ ଆଲୋଚକ ହାରୁନ୍ ସିଦ୍ଦିକ୍‌ଙ୍କ ଭାଷାରେ- 'ଆତିୟା ହେଉଛନ୍ତି ସିନ୍ଧୁ ପ୍ରଦେଶର ଗ୍ରାମୀଣ ସ୍ୱର। ତାଙ୍କ ସ୍ୱରରେ ଥାଏ ଯନ୍ତ୍ରଣା ଓ ଚାପି ହୋଇ ରହିଥିବା କ୍ରୋଧ। ଜଣେ ଗ୍ରାମୀଣ ସିନ୍ଧି ମହିଳା ଭାବରେ ସିଏ ଦେଖନ୍ତି ସବୁଠି ନାରୀ ବଞ୍ଚିତ

ହେବାର ଦୃଶ୍ୟ। ସିଏ ବାରମ୍ବାର ଅତ୍ୟାଚାରର ସମ୍ମୁଖୀନ ହୁଅନ୍ତି। ଜଣେ ନାରୀ ଭାବେ ପୁରୁଷର ଅତ୍ୟାଚାର ଏବଂ ତୃତୀୟ ବିଶ୍ୱର ଜଣେ ନାରୀ ଭାବରେ ବିକଶିତ ପୁଞ୍ଜିପତି ରାଷ୍ଟ୍ରମାନଙ୍କର ଶୋଷଣ ଓ ଅତ୍ୟାଚାରକୁ ମଧ୍ୟ ସାମ୍ନା କରନ୍ତି।

ସମ୍ପ୍ରତି ପାକିସ୍ତାନୀ କବିତାରେ ଆତିୟାଙ୍କୁ କୁହାଯାଏ ସେ ସବୁଠୁ ସାହସୀ, ଭିନ୍ନ ଏବଂ ନାରୀ ଅସ୍ମିତାରେ ବିଶ୍ୱାସ କରୁଥିବା ଶ୍ରେଷ୍ଠତମ ଲେଖିକା। ତାଙ୍କ ଝିଅ ପାଇଁ ଲେଖା ହୋଇଥିବା ଗୋଟିଏ କବିତାରେ ଆତିୟା କହିଥିଲେ-

ଯଦି ବି ସେମାନେ ତତେ କଳଙ୍କିନୀ ବୋଲି କହନ୍ତି
ତଥାପି ବି ତୁ ତୋ ପ୍ରେମକୁ
କୁକୁର ବେକରେ ବନ୍ଧା ପଟି ବୋଲି ଭାବିବୁ ନାହିଁ।

ଅନ୍ୟ ଏକ କବିତାରେ

ତୁ ନିଶ୍ଚୟ ଜ୍ଞାନର ଫଳ ଖାଇବୁ
ତାପରେ ଯାଇ ଆମର ପ୍ରେମ ହେବ
ଫୁଲ ଓ ମହକ ପରି।

ଆତିଆ ଦାଉଦ୍‌ଙ୍କର ଜନ୍ମ ସିନ୍ଧୁ ପ୍ରଦେଶର ମୋଲେଦିନୋ ଲାରେକ୍ ଗାଁରେ। ସେ କିନ୍ତୁ ରହନ୍ତି କରାଚିରେ। ତାଙ୍କ ସ୍ୱାମୀ ଖୁଦବକ୍ସ ଆବ୍‌ରୋ ଜଣେ ପ୍ରସିଦ୍ଧ ଚିତ୍ର ଶିଳ୍ପୀ ଓ ଗ୍ରାଫିକ୍ ଡିଜାଇନର। ଆତିୟାଙ୍କ ଦୁଇ ଝିଅ, ଯାହାଙ୍କ ପାଇଁ ସିଏ ପ୍ରଚୁର କବିତା ଲେଖିଛନ୍ତି। ନିଜେ ଭୋଗିଥିବା ଯନ୍ତ୍ରଣା ଓ ଯାତନାରୁ ମୁକ୍ତ ହେବା ପାଇଁ ସେ ଝିଅମାନଙ୍କୁ ଏକ ନୂଆ ସମାଜର ସ୍ୱପ୍ନ ଦେଖାଇଛନ୍ତି। ବନ୍ଧନରୁ ମୁକୁଳି ଏକ ମୁକ୍ତ ଏବଂ ଉଦାର ସମାଜ ବ୍ୟବସ୍ଥାକୁ ନିଜ କବିତାରେ ପ୍ରତିଷ୍ଠା କରିବାର ପ୍ରୟାସ କରିଛନ୍ତି ଆତିୟା। ଇଂରାଜୀରେ ତାଙ୍କର ଏକମାତ୍ର କବିତା ସଂକଳନ 'Raging to be free'। ଖୁବ୍ କମ୍ କବିତା ଲେଖି ଜାତୀୟ ଏବଂ ଆନ୍ତର୍ଜାତୀକସ୍ତରରେ ନିଜ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ତିଆରି କରିଛନ୍ତି ଆତିୟା।

କିଛିଦିନ ତଳେ 'ଟାଇମ୍' ପତ୍ରିକା ସହ ଏକ ସାକ୍ଷାତକାରରେ ଆତିୟା କହିଥିଲେ- 'ଇସ୍‌ଲାମୀୟତ୍‌ର ପ୍ରଥମ କାମ ହେଲା ନାରୀମାନଙ୍କୁ ସମୂଳେ ଉତ୍ପାଟନ। ଇସ୍‌ଲାମ୍ ଏବଂ ଆଧୁନିକ ପୃଥିବୀ କଦାପି ଏକା ସାଙ୍ଗରେ ରହିପାରିବେ ନାହିଁ।' ପାକିସ୍ତାନରେ ଦିନକୁ ଦିନ ବଢି ଚାଲିଥିବା 'ମୁଲ୍ଲାରାଜ'ର ମୁକାବିଲା କରିବାକୁ ସାମାଜିକ ଓ ରାଜନୈତିକସ୍ତରରେ ସମର୍ଥ ନହେଲେ ମଧ୍ୟ ନିଜ କଲମ ମାଧ୍ୟମରେ ଆତିୟା ପ୍ରୟାସ

ଜାରିରଖିଛନ୍ତି। ଯେତେବେଳେ ତାଙ୍କର ୧୧ ବର୍ଷର ଝିଅ ସୁହାଇକୁ ତାଙ୍କ ସ୍କୁଲ ତରଫରୁ ମୁଣ୍ଡରେ ପର୍ଦ୍ଦା ଦେବାକୁ ବାଧ୍ୟ କରାଗଲା, ତାହା ଥିଲା ଆତିୟାଙ୍କ ଜୀବନର କ୍ଷୋଭଭରା ଦିନ। ତାଙ୍କ ଦ୍ୱିତୀୟ ଝିଅ ସୁନ୍‌ହା, ଯିଏ ସବୁବେଳେ ଜିନ୍ସ ଓ ଟି-ସାର୍ଟ ପିନ୍ଧିବାକୁ ଭଲପାଏ, ତାକୁ ଏବେ ସାଲ୍‌ୱାର ପିନ୍ଧି ମୁଣ୍ଡରେ ଓଢଣା ଦେବାକୁ ପଡୁଛି। ଆତିୟା କହନ୍ତି- 'ଯେତେବେଳେ ମୋ ଝିଅ ତା ମୁଣ୍ଡରେ ଦୁପଟା ଦେଲା, ସେତେବେଳେ ମୁଁ ତା ଆଖିରେ ଲୁହ ଦେଖିଛି।' 'ମୁଁ ଏହାକୁ ଗ୍ରହଣ କରୁନାହିଁ' ଶୀର୍ଷକ କବିତାରେ ଆତିୟା ଲେଖିଛନ୍ତି-

ସବୁନାରୀ ଜାଣନ୍ତି ମୁଣ୍ଡରେ ଓଢଣା
ଦେବାର ଅର୍ଥ ସରଳତ ନୁହେଁ
ଖୋମିନିର ଚାମଚାମାନେ
ତମେ ଆମକୁ ବାଧ୍ୟ କର
ଯେଉଁ ଓଢଣା ପିନ୍ଧିବାକୁ ମୁଣ୍ଡରେ।

ଏକଦା ସିନ୍ଧୁ ପ୍ରଦେଶ ଥିଲା ସୁଫି ସନ୍ଥମାନଙ୍କ ପାଇଁ ପ୍ରସିଦ୍ଧ। ଧର୍ମ ନିରପେକ୍ଷତା ଏବଂ ଉଦାରତା ପାଇଁ ସୁଫି ଧର୍ମ ବେଶ୍ ପ୍ରସିଦ୍ଧ। ଏବେ କିନ୍ତୁ ଚିତ୍ର ବଦଳି ଯାଇଛି। ଆତିୟା କରାଚିଠାରୁ ୨୫୦ କି.ମି. ଦୂରରେ ଥିବା ତଙ୍କ ଗାଁକୁ ଯେତେବେଳେ ଯାଆନ୍ତି, ସେଠି ଦେଖନ୍ତି କେମିତି ଗୋଟିଏ ପରେ ଗୋଟିଏ ସନ୍ତ୍ରାସବାଦୀ କ୍ୟାମ୍ପ ଗଢି ଉଠିଛି। ପାକିସ୍ତାନୀ ଯୁବକଙ୍କୁ ଇସ୍‌ଲାମ୍‌ର ମନ୍ତ୍ର ଶିଖେଇ ମଣିଷ ହତ୍ୟା କରିବାର ଶିକ୍ଷା ଦିଆଯାଉଛି। ପାକିସ୍ତାନ ଆସ୍ତେ ଆସ୍ତେ ଗୋଟେ ବ୍ଲାଷ୍ଟ ଫର୍ନେସ୍‌ରେ ପରିଣତ ହେଉଛି। ଏବେ ସବୁଠି ଚୋରା ଚାଲାଣ ହେଉଛି ଅସ୍ତ୍ରଶସ୍ତ୍ର। ବିନା ଲାଇସେନ୍ସରେ ଅସ୍ତ୍ର ଧରି ବୁଲୁଛନ୍ତି ପାକିସ୍ତାନର ଯୁବକ। ସବୁଠି ହିଂସା ଓ ଅଶାନ୍ତିର ବାତାବରଣ। ଦାରିଦ୍ର୍ୟ ଏବଂ ଅଶିକ୍ଷା ବିରୁଦ୍ଧରେ ସଂଗ୍ରାମକୁ ପଛ କରି କାଶ୍ମୀରରେ ଧର୍ମ ଯୁଦ୍ଧର ଡାକରାରେ ସମସ୍ତେ ମସ୍‌ଗୁଲ। ପାକିସ୍ତାନର ଏହି ପରିସ୍ଥିତି ଭୀଷଣ ଭବରେ ଆହତ କରିଛି ଆତିୟାଙ୍କୁ। କିନ୍ତୁ ଜଣେ କବିର ସ୍ୱର ଶୁଣେ କିଏ ? ସବୁବେଳେ ଏକ ମୌଳବାଦୀ ସମାଜ ଅନ୍ଧ, ମୁକ ଓ ବଧିର ହୋଇଯାଏ। ଆତିୟାଙ୍କର ଏକ ପ୍ରସିଦ୍ଧ କବିତା ରହିଛି 'ନୀରବତାର ସ୍ୱର'।

ମୋତେ ଘେରି ରହିଛି ପ୍ରଚୁର ଭିଡ
କିନ୍ତୁ ସବୁଦିଗରୁ ମୋତେ ନୀରବତା ହିଁ ଡାକୁଛି।
ଲୋକମାନେ ଦିଶୁଛନ୍ତି ପଥର ଦେହରେ
ଖୋଳା ହେଲା ମୂର୍ତ୍ତି ପରି

ମୁଁ ସେମାନଙ୍କୁ ଦେଖେ,
କିନ୍ତୁ ପଥର ମୂର୍ତ୍ତିମାନେ ଦେଖିପାରନ୍ତିନି ଯେ
ମୁଁ ସେମାନଙ୍କୁ ଦେଖୁଛି
ମୁଁ ଘଣ୍ଟି ସବୁକୁ ବଜାଏ
କିନ୍ତୁ ସବୁ ଦିଗରୁ ନୀରବତା ହିଁ ଡାକୁଥାଏ।

ପବନରେ ମୋର ସ୍ୱର ପ୍ରତିଧ୍ୱନିତ ହୁଏ
ମୋର ଏକାକୀ ସଭା ତିଆରି କରେ ଅନେକ କୋଳାହଳ
ମୋ ହୃଦୟ ଚିତ୍କାର କରେ ଧଡ୍....... ଧଡ୍.......
ମୋ ଭଙ୍ଗା ଶ୍ୱାସ ପ୍ରଶ୍ୱାସ ଅଭିଯୋଗ କରୁଥାଏ।
ମୋ ଶିରା ପ୍ରଶିରାରେ ରକ୍ତ ବୋହୁଥାଏ
ବନ୍ୟା ପ୍ଲାବିତ ନଦୀ ପରି।

ମୋ ଗଭୀର ଅନ୍ତରର କୋଳାହଳ
ପବନର ସ୍ୱର ସହ ମିଶିଯାଏ
ଏ ନୀରବତାର କୋଳାହଳ ହୁଏତ
ମୋର କୌଣସି କାମରେ ଆସି ନପାରେ
ଏବଂ ମୋତେ ଘେରି ଏ ଯେଉଁ
ପଥୁରିଆ ସ୍ଥିରତା ହୁଏତ
ମୋତେ ବି ଦିନେ ପଥର କରି ଦେଇପାରେ

ବୋଧ ହୁଏ ଏକ ମୌଳବାଦୀ ସମାଜରେ ଆତିୟାଙ୍କର କବିତା ଏକ ନୂଆ ସକାଳର ମଞ୍ଜିକୁ ଶବ୍ଦରେ ପ୍ରତିପାଳିତ କରୁଛି।

୦୦୦

# ଅବର୍ତ୍ତମାନରେ ଶରତ ମହାନ୍ତି

"ଚେତନା ଗୋଟିଏ ବସ୍ତୁ ନୁହେଁ, ଭାବ ନୁହେଁ, ଇଗୋ ନୁହେଁ ବା ସବ୍‌ଷ୍ଟାନସ୍ ନୁହେଁ। ଏହା କିଛି ନୁହେଁ, ଅର୍ଥାତ୍ ନିର୍ଦ୍ଦିଷ୍ଟ କିଛି ନୁହେଁ। ଚେତନା ହିଁ ନଥିଙ୍ଗ୍।" ସ୍ପଷ୍ଟ ମନେ ଅଛି, ମୋ'ର ସାଙ୍ଗ ବିଘ୍ନ ପଣ୍ଡା ପ୍ରଥମ କବିତା ଡାଏରିରେ ଏଇ ତିନୋଟି ଦାର୍ଶନିକ ବାକ୍ୟ ଲେଖିଥିଲା ଏବଂ ମୋ'ର ତାତ୍‌କାଳିକ ବୁଦ୍ଧିରେ ଏସବୁ ବାକ୍ୟର କୌଣସି ଅର୍ଥ ନଥିଲା। ବରଂ ବିଘ୍ନର ଉଦ୍‌ଭଟ ଦାର୍ଶନିକତା ଥିଲା ମୋ' ପାଇଁ ହାସ୍ୟାସ୍ପଦ। ମୋର ତରୁଣ ବେଳାର ସରଳ ଗତିପଥରେ ଏତେ ଜଟିଳ ବାକ୍ୟର ବୋଝ ବୋହିବାର ଆଗ୍ରହ ବି ମୋ'ର ନଥିଲା। ତେବେ, ମନ ଭିତରେ ପ୍ରଶ୍ନଟିଏ ଜନ୍ମ ନେଇଥିଲା- ଏମିତି ବାକ୍ୟ ସବୁ କେଉଁ ବହିରେ ଲେଖା ହୋଇଥାଏ ? ପ୍ରଶ୍ନର ଉତ୍ତର ଥିଲା ବିଘ୍ନ ପାଖରେ। ସେ ମୋତେ ବହିଟିଏ ପଢ଼ିବାକୁ ଦେଲା। ବହିର ନାଁ 'ଜାଁ ପଲ୍ ସାର୍ତ୍ତ'। ଲେଖକ ଶରତ କୁମାର ମହାନ୍ତି।

ଶରତ ମହାନ୍ତିଙ୍କୁ ପଢ଼ିବା ପାଇଁ ଆଗ୍ରହ ଥିଲା ନିଶ୍ଚୟ, କିନ୍ତୁ ବୁଝିବାର ସାହସ ନଥିଲା। ସେତେବେଳେ ନୂଆ ନୂଆ କବିତା ଲେଖାର ସମୟ। ପୃଥିବୀ ଲାଗୁଥାଏ ବେଶ୍ ସୁନ୍ଦର। ଆଖିରେ ଭରିଥାଏ ଗୋଟେ ଶାଗୁଆ ପୃଥିବୀର ସ୍ୱପ୍ନ। ଜୀବନର ପ୍ରତ୍ୟେକ ଚିନ୍ତା ପ୍ରେମରେ ଆରମ୍ଭ ହୋଇ ପ୍ରେମରେ ହିଁ ସରିଯାଉଥିଲା। ଆଉ ପ୍ରେମ ବି ଥିଲା କାଗଜଡଙ୍ଗା ପରି। ଅସରାଏ ବର୍ଷାରେ ତିନ୍ତିଗଲା ପରେ କୁଆଡେ ହଜି ଯାଉଥିଲା। ସେତେବେଳେ ଶରତ ମହାନ୍ତିଙ୍କ ଲେଖାର ଆକର୍ଷଣ ଖୁବ୍ ସାଂଘାତିକ। ମଣିଷ ଜୀବନର ବହୁ ଜଟିଳ ସତ୍ୟକୁ ବୁଝେଇବାର ପ୍ରୟାସ କରୁଥିଲେ ସେ। କିର୍‌କେଗାର୍ଡ, ହାଇଡିଗାର୍, ନିଟ୍‌ସେ, ସାର୍ତ୍ତ, କାମ୍ୟୁ, ବୁବର, କାଫ୍‌କା, ଦସ୍ତୋଭସ୍କି... ଏତେ ଓଜନଦାର୍ ନାଁ'ର ଲେଖକମାନଙ୍କୁ ପଢ଼ିବା ପାଇଁ ଗୋଟେ ଅଦ୍ଭୁତ ଆମନ୍ତ୍ରଣ ଜଣାଉଥିଲେ ଶରତବାବୁ। ତାଙ୍କ 'ଅସ୍ତିତ୍ୱବାଦର ମର୍ମକଥା' ବହିଟି ଥାଏ ଆମ ଅନର୍ସ ଶ୍ରେଣୀର ରେଫରେନ୍ସ। ଆମ ସାର୍‌ମାନେ ବି ସେ ବହିଟି ବିଷୟରେ ଏମିତି କହୁଥାନ୍ତି ସତେକି ତାହା ହିଁ ଏକମାତ୍ର

ଭଲ ବହି ଓଡ଼ିଆ ସାହିତ୍ୟର। କଳା, ସବୁଜ ରଂଗର ଏକ ଅଦ୍ଭୁତ ମଲାଟ ଥିବା ସେ ବହିଟି ମୁଁ ଡରି ଡରି ଆଣିଥିଲି ପଢିବା ପାଇଁ। ବାପ୍‌ରେ କି ଓଜନ୍‌ଦାର ତାତ୍ତ୍ୱିକ କଥା ସବୁ। ଭାବିଲି, ନା ପଢି ହେବନି। ମୂଳରୁ ଶେଷ ଯାଏଁ କେବଳ ଓଲଟାଇ ଗଲି। କିର୍‌କେଗାର୍ଡ ଅଧ୍ୟାୟରେ ମୋତେ ଲାଗିଲା କୋଉଠି ଗୋଟେ ରୋମାଣ୍ଟିକ୍ ଅନୁଭବ ଏଇଠି ଅଛି। ଓଃ! କିର୍‌କେଗାର୍ଡ ତା ହେଲେ ପ୍ରେମିକ! ସେ ଅଧ୍ୟାୟରୁ ହିଁ ଆରମ୍ଭ ହେଲା ପଢାପଢି। ପଢୁପଢୁ ବଦଳିଗଲା ପ୍ରେମର ସଂଜ୍ଞା। ଜୀବନ ଲାଗିଲା ଖୁବ୍ ଅଲଗା। ଭସାବାଦଲ ପରି ଉଡି ବୁଲିବାର ପ୍ରବଣତା ହଠାତ୍ ସ୍ଥିର ହୋଇଗଲା। ଏଥିସହ ଆରମ୍ଭ ଶରତ ମହାନ୍ତିଙ୍କ ସହ ନୂଆ ଏକ ପରିଚୟ।

ଜୀବନର ଗଭୀରତା ଓ ବ୍ୟାପ୍ତି, ଚେତନାର ଜଟିଳ ଚିନ୍ତନକ୍ରିୟା ଏବଂ ଅସ୍ତିତ୍ୱର ଦାର୍ଶନିକ ଅନୁଶୀଳନର ବୌଦ୍ଧିକ ପରିସରକୁ ଆକର୍ଷିତ କରିପାରିବାର ଯାଦୁକରୀ କଲମର ଅଧିକାରୀ ଥିଲେ ଶରତ ମହାନ୍ତି। ଆମ ଆଖି ଆଗରେ ଏକ ବିଶାଳ ପୃଥିବୀର ମାନଚିତ୍ର ଅଙ୍କନ କରିବାର ଗୁରୁଦାୟିତ୍ୱ ବହନ କରିଥିଲେ ସେ, ନିଜ ତରଫରୁ। ତାଙ୍କର ଲେଖା ବୁଝି ନ ପାରିଲେ ବି ପଢିବାର ମୋହ ବଢଉଥିଲା। ଆମର ବୌଦ୍ଧିକ ଆଗ୍ରହ ଓ ଅନ୍ୱେଷାକୁ ପବନ ଦେଉଥିଲା। ବିଶ୍ୱର ଦର୍ଶନ ଓ ସାହିତ୍ୟର ବ୍ୟାପ୍ତି ବିଷୟରେ ମୌଳିକ ଧାରଣାଟିଏ ସୃଷ୍ଟି କରୁଥିଲା। ଶରତ ବାବୁଙ୍କୁ ପଢୁପଢୁ ଆମେ ପାଲଟି ଯାଉଥିଲୁ ଭିନ୍ନ ଏକ ଗ୍ରହର ମଣିଷ। ବଦଳି ଯାଉଥିଲା ସବୁ ଦୃଶ୍ୟର ଅର୍ଥ ଓ ପ୍ରତ୍ୟେକ ମଣିଷ ମନେ ହେଉଥିଲେ ଜଣେ ଜଣେ ଦାର୍ଶନିକ। ଦାର୍ଶନିକ ହେବାର ଏକ ମିଛ ସ୍ୱପ୍ନ ମୋତେ ବେଶୀ ବେଶୀ ଆକୃଷ୍ଟ କଲା। ଅଥଚ ଜଣେ ପ୍ରାବନ୍ଧିକ ତଥ୍ୟ ଓ ତତ୍ତ୍ୱର କଥା କହିବା ଉଚିତ୍ ବୋଲି ଆମେ ଭାବୁଥିଲୁ। ଶରତବାବୁ ତଥ୍ୟ ଓ ତତ୍ତ୍ୱର ଏକ ଭିନ୍ନ ବ୍ୟାଖ୍ୟା କରୁଥିଲେ। ତାଙ୍କ ଅନୁଶୀଳନ ଥିଲା ଯଥେଷ୍ଟ ଅଲଗା। କବିତା ଛଡା ପ୍ରବନ୍ଧ ବହି ପଢିବା ସମୟରେ ଓଡ଼ିଆ ସାହିତ୍ୟର ଦୁଇ ଜଣ ରଥୀ ମୋତେ ବେଶ୍ ଆକୃଷ୍ଟ କରୁଥାନ୍ତି। ଶରତ କୁମାର ମହାନ୍ତି ଓ ପ୍ରଫେସର ଚିତ୍ତରଂଜନ ଦାସ। ଚିତ୍ତ ଭାଇଙ୍କ ଲେଖାରେ କିଛି ଗୋଟେ ମୌଳିକ କଥା ଥିଲାପରି ଲାଗେ। ଖୁବ୍ ଗଭୀର ଓ ମନନଶୀଳ ତାଙ୍କର ପ୍ରବନ୍ଧ। ଅଥଚ ତାଙ୍କୁ ବୁଝିବା ପାଇଁ ସବୁଠୁ ବଡ ବାଧକ ତାଙ୍କର ଭାଷା। ଯେଉଁ ଭାଷାରେ ଚିତ୍ତଭାଇ ତାଙ୍କ ଭାବନାକୁ ବ୍ୟକ୍ତ କରନ୍ତି ସେଥିରେ ମୋତେ ଲାଗେ ମୁଁ ବାଟବଣା ହୋଇଯାଉଛି। ମଂଜି ବିଷୟରେ ଜାଣିବା ପାଇଁ ଚିତ୍ତଭାଇ ମୋତେ ବେଶୀ ବେଶୀ ମାଟିର କଥା କହୁଛନ୍ତି। ମାଟିରୁ ବୀଜକୁ ଆସିଲାବେଳେ ମୁଁ ପଚାରିଥିବା ପ୍ରଶ୍ନଟି ମୋତେ ଲାଗୁଛି ଅବାନ୍ତର। ଶରତବାବୁ କିନ୍ତୁ ସ୍ୱଷ୍ଟ ଓ ସରଳ। ତାଙ୍କ ଭାଷାରେ ବିଶେଷ ଆଟୋପ ନଥାଏ। ଠାଏ

ଠାଏ ଟାଇପ୍ ରାଇଟର୍‌ର ଶବ୍ଦ ପରି ଭାଷା । ସାହିତ୍ୟିକ ଚାଲାକିରୁ ମୁକ୍ତ, ଅତ୍ୟନ୍ତ ଗଭୀର ଓ ସ୍ୱଚ୍ଛ ତାଙ୍କର ବାକ୍ୟ ବିନ୍ୟାସ । ସେଥିପାଇଁ ସେ ଆମର ପ୍ରିୟ ପ୍ରାବନ୍ଧିକ ।

*ସକ୍ରେଟିସ୍ ଓ ପ୍ଲାଟୋ, ଜାଁ ପଲ୍ ସାର୍ତ୍ର ଏବଂ ଅସ୍ତିତ୍ୱବାଦର ମର୍ମକଥା,* ଏହି ବହି ତିନୋଟି ଥିଲା ପାଶ୍ଚାତ୍ୟ ସାହିତ୍ୟ ଓ ଦର୍ଶନ ଅନ୍ୱେଷୁମାନଙ୍କ ପାଇଁ ପ୍ରାରମ୍ଭିକ ଠିକଣା । ମୋର କହିବାରେ ଦ୍ୱିଧା ନାହିଁ, ତମାମ କଲେଜ ଜୀବନ ଶରତବାବୁଙ୍କ ବହି ପଢ଼ି ନିଜକୁ ଚିନ୍ତକ ଓ ଦାର୍ଶନିକ ଭାବରେ ପରିଚିତ କରାଇବାର ନାଟକ ମୁଁ କରିଛି । ବିଇଙ୍ଗ୍, ନଥିଙ୍ଗନେସ୍, ନସିଆ, ଡାସାଇନ୍, ଅସ୍ତିତ୍ୱ ଇତ୍ୟାଦି ଭାରି ଶବ୍ଦ ବିଷୟରେ ସବ୍‌ଜାନ୍ତା ପରି ଭାସମାନ କଥା ସବୁ କହିଛି । ଟିକେ ଟିକେ କଥାରେ ନିତ୍‌ସେ, କିର୍‌କେଗାର୍ଡ, କାମ୍ୟୁ, କାଫ୍‌କା, ସାର୍ତ୍ତଙ୍କ ଉଦାହରଣ ଦେଇ ପଣ୍ଡିତ ବୋଲାଇବାର ଛଳନା କରିଛି । ତେବେ, ଏସବୁ ନିରପରାଧ ଅହଙ୍କାର ପଛରେ ଏକମାତ୍ର କାରଣ ଥିଲା ଶରତବାବୁଙ୍କ ପ୍ରତି ଆମର ଆସ୍ଥା । ଶରତବାବୁଙ୍କୁ ପଢିଦେଲେ ଇ ତମାମ୍ ପାଶ୍ଚାତ୍ୟ ସାହିତ୍ୟ ଓ ଦର୍ଶନକୁ ବୁଝାଯାଇପାରିବ । ମୋ’ ଜାଣିବାରେ ଅନେକ ଓଡ଼ିଆ ପାଠକ ଆଜି ମଧ୍ୟ ଏଇ କଥା ଭାବନ୍ତି ।

*ସକ୍ରେଟିସ୍ ଓ ପ୍ଲାଟୋ, ଜାଁ ପଲ୍ ସାର୍ତ୍ର, ଅସ୍ତିତ୍ୱବାଦର ମର୍ମକଥା ଓ ଗ୍ରୀକ୍‌ଜାତିର ଜୀବନଗାଥା* - ଏଇ ଚାରିଖଣ୍ଡ ବହି ପଢିସାରିଲା ପରେ ଗୋଟେ ଅଦ୍ଭୁତ ପ୍ରଶ୍ନ ଆସିଲା ମନରେ । ଶରତବାବୁ କ’ଣ ସବୁବେଳେ ପାଶ୍ଚାତ୍ୟ ତତ୍ତ୍ୱ ଓ ଦର୍ଶନରେ ଆଗ୍ରହୀ ? ପ୍ରାଚ୍ୟ ତତ୍ତ୍ୱ ଓ ଦର୍ଶନ ବିଷୟରେ ସେ କ’ଣ କିଛି ଲେଖିନାହାନ୍ତି ! ନା, ତଥାକଥିତ ଇଂରାଜୀ ପଢ଼ା ବାବୁମାନଙ୍କ ପରି ସିଏ ବି ପ୍ରାଚ୍ୟ-ବିଶେଷ କରି ଭାରତୀୟ ଦର୍ଶନକୁ ଅପ୍ରାସଙ୍ଗିକ ମନେକରନ୍ତି ! ମୋ’ର ପ୍ରଶ୍ନକୁ ଫୁଃ କରି ଉଡେଇ ଦିଏ ତାଙ୍କର ଅନ୍ୟ ଏକ ବହି ‘ଛତ୍ରପତି ବିବେକାନନ୍ଦ’ । ସ୍ୱାମୀଜୀଙ୍କ ଜୀବନ-ଦର୍ଶନକୁ ନେଇ ଓଡ଼ିଆ ଭାଷାରେ ରଚିତ ବହିଗୁଡ଼ିକ ମଧ୍ୟରେ ଏହା ହିଁ ସର୍ବଶ୍ରେଷ୍ଠ । ସ୍ୱାମୀଜୀଙ୍କର ବିଶାଳ ବ୍ୟକ୍ତିତ୍ୱର ଅପୂର୍ବ ବର୍ଣ୍ଣନା, ଶ୍ରୀରାମକୃଷ୍ଣଙ୍କ ଜୀବନବୋଧର ଚମତ୍କାର ବିଶ୍ଳେଷଣ ସହିତ ଏକ ପ୍ରଗତିଶୀଳ-ବିଜ୍ଞାନୀର ମନ ନେଇ ଜଣେ ଆଧ୍ୟାତ୍ମିକ ମହାନାୟକଙ୍କର ଜୀବନୀ ରଚନା କରିପାରିଲା ପରି ସୁଦକ୍ଷ ପ୍ରାବନ୍ଧିକଙ୍କର ଏକ ଜାଆଁରା (Genre) ଶରତବାବୁଙ୍କ ସହ ସରିଯାଇଛି- ଏହା ନିଷ୍ଠୁର ସତ୍ୟ । ସ୍ୱାମୀଜୀଙ୍କ ଆଧ୍ୟାତ୍ମିକ ଅନ୍ୱେଷା ଓ ଭାରତୀୟ ଜନମାନସକୁ ଜାଗ୍ରତ କରିବାର ଅଭିପ୍ସା ବିଷୟରେ ଶରତବାବୁ ଖୁବ୍ ଗଭୀରତାର ସହ ଚିନ୍ତା କରିଛନ୍ତି ।

ଏ’ଠି କହି ରଖେ, ଦର୍ଶନ ଓ ତତ୍ତ୍ୱର କଥା କହିଲାବେଳେ ଶରତବାବୁଙ୍କ ଭାଷାଟି ତତ୍ତ୍ୱନିଷ୍ଠ । ସୁତରାଂ ଟିକେ କ୍ଲିଷ୍ଟ । କିନ୍ତୁ ଜୀବନୀ ରଚନା ବେଳେ ସିଏ ଲାଗନ୍ତି ସମ୍ବେଦନଶୀଳ

କଥାଶିଳ୍ପୀଟିଏ ପରି। ଗାନ୍ଧିଜୀ ଏବଂ ବିବେକାନନ୍ଦଙ୍କ ଜୀବନ-ଦର୍ଶନ ରଚନାକାଳରେ ଯଥାର୍ଥତା ଓ ଭାବପ୍ରବଣତାର ସମନ୍ୱୟ ସ୍ପଷ୍ଟ ବାରି ହୋଇପଡେ ତାଙ୍କ ଭାଷାରେ। ଗଭୀର ଭଲ ପାଇବାର ଉପଲବ୍ଧି ହିଁ ଏଇ ଚମତ୍କାର ଗଦ୍ୟ ଭାଷାର ହେତୁ। ପ୍ରେମର ଏଇ ମଧୁରପ୍ରାପ୍ତି ଫଳରେ ହିଁ ସାହିତ୍ୟରେ କୈବଲ୍ୟର ଅନୁଭବ ଆସେ। ପୃଥିବୀର ମନୀଷା ଓ ମହାଜୀବନର ମନୀଷୀମାନଙ୍କ ପ୍ରତି ଶରତବାବୁଙ୍କ ଅନ୍ତରରେ ଯେଉଁ ଅନୁରାଗର ଜୁଆର ଉଠୁଥିଲା, ସେଥିରେ ଓଡ଼ିଆ ସାହିତ୍ୟ ପ୍ଲାବିତ ହୋଇଛି।

ମୋ ନିଜ କ୍ଷେତ୍ରରେ ବୟସ ବଢିବା ସହ ପାଶ୍ଚାତ୍ୟ ଲେଖକମାନଙ୍କୁ ମୌଳିକ ରୂପରେ ପଢିବାର ଆଗ୍ରହ ବଢିଛି। କିନ୍ତୁ ପଢାପଢି କ୍ଷେତ୍ରରେ ଶରତବାବୁ ମୁଁ ମୋ ପାଇଁ ଏକମାତ୍ର ରେଫରେନ୍ସ। ଦର୍ଶନକୁ ପଢି ହଜମ୍ କରିବାର ଅସାମର୍ଥ୍ୟ ବିଷୟରେ ମୁଁ ଗୋଟେ ସମୟରେ ସଚେତନ ହୋଇଯାଇଛି। ତେଣୁ ସାହିତ୍ୟ ମୋତେ ଆକୃଷ୍ଟ କରିଛି ବେଶୀ। ନିତ୍‌ସେଙ୍କୁ ପଢିଲାବେଳେ, ମୋତେ ଲାଗିଛି, ସେ ଦାର୍ଶନିକ କମ୍ - ବେଶୀ କବି। ଫ୍ରାନ୍‌ଜ କାଫ୍‌କାଙ୍କ ଅମର ସୃଷ୍ଟି 'ମେଟାମରଫସିସ୍'ର ପ୍ରଥମ ଧାଡି "As Gregor Samsa awoke one morning from uneasy dreams he found himself transformed in his bed into a gigantic insect." ମୋତେ ବର୍ଷ ବର୍ଷ ଧରି ଆଚ୍ଛନ୍ନ କରିରଖିଛି। ପ୍ରତ୍ୟେକଟି ବହି ପଢିସାରିଲା ପରେ ବୌଦ୍ଧିକ ପରିତୃପ୍ତିର ଗୋଟିଏ ନାଁ ମନେ ପଡିଛି   ଶରତ ମହାନ୍ତି। କହିବାର ଇଚ୍ଛା ହୋଇଛି - ଆପଣ ନଥିଲେ ମୁଁ ଏତେ ବିରାଟ ଆନନ୍ଦରୁ ବଞ୍ଚିତ ହୋଇଥାନ୍ତି ନିଶ୍ଚୟ। କେବେ କେମିତି ତାଙ୍କ ସହ ଯୁକ୍ତି ଲାଗିବାର ଇଚ୍ଛା ଜାଗିଛି। ଭାବିଛି, କେବେ ତାଙ୍କ ସହ ଦେଖାହେଲେ ନିଶ୍ଚୟ ପଚାରିବି - ଆପଣ କାଫ୍‌କାଙ୍କ ଲେଖାର ଶୈଳୀ ଉପରେ ଯାହା କହିଛନ୍ତି (ଜଣେ ବିଜ୍ଞାନୀର ବର୍ଣ୍ଣନା ପରି ତାଙ୍କର ନିରୁତ୍ତାପ, ନିରପେକ୍ଷ ବର୍ଣ୍ଣନା) ତା' କ'ଣ ଠିକ୍। କାଫ୍‌କାଙ୍କ ବର୍ଣ୍ଣନା କ'ଣ ସତରେ ନିରୁତ୍ତାପ? ଜାଣେ, ତାଙ୍କ ପାଖରେ ନିଶ୍ଚୟ ରହିଥିଲା ମୋ ପ୍ରଶ୍ନର ଉତ୍ତର। ହେଲେ, ସେ ସୁଯୋଗ କେବେ ବି ଆସିଲା ନାହିଁ ଜୀବନରେ।

ଜୀବନରେ ତାଙ୍କ ସହ ଖୁବ୍ କମ୍ ସମୟର ପରିଚୟ ଓ ସାକ୍ଷାତ। କିଛିମାସ ତଳେ 'ଅକ୍ଷୟ ଉତ୍ସବ'ରେ ତାଙ୍କୁ ନିଜର ପରିଚୟ ଦେଇ 'ଅନୁପମ ଭାରତ'ର 'ସାହିତ୍ୟ ପୃଷ୍ଠା' ପାଇଁ କିଛି ଲେଖାଲେଖି କରିବାକୁ ଅନୁରୋଧ କଲି। ତାଙ୍କର ରୋକ୍‌ଠୋକ୍ ଜବାବ୍ 'ନା, ମୋ ପାଖରେ ସମୟ ନାହିଁ।'। ଅନ୍ୟମାନଙ୍କ ପରି 'ହେଉ ଦେଖିବା', 'ଘରକୁ ଆସ', 'ଏବେ ବ୍ୟସ୍ତ ଅଛି-ପରେ ଆସ ଦେଖିବା' ପରି ମିଛ ଆଶ୍ୱାସନା ଅପେକ୍ଷା ତାଙ୍କ ପ୍ରତ୍ୟାଖ୍ୟାନଟିକୁ ମୁଁ ବେଶ୍ ଭଲ ପାଇଥିଲି। ମୋ ପ୍ରସ୍ତାବ ପ୍ରତ୍ୟାଖ୍ୟାନର

କାରଣ ସ୍ୱରୂପ ସେ କହିଥିଲେ 'ଏବେ ମୁଁ ପୃଥିବୀର କେତୋଟି ପ୍ରାଚୀନ ସଭ୍ୟତା ବିଷୟରେ ଲେଖାଲେଖି କରୁଛି - ମୋ ପାଖରେ ସମ୍ବାଦପତ୍ର ପାଇଁ ଲେଖିବାକୁ ଜମା ସମୟ ନାହିଁ।' ସେଇ ବୋଧେ ତାଙ୍କ ସହ ମୋର ଶେଷ ଦେଖା। କିନ୍ତୁ ସବୁବେଳେ 'ଗାଇଡ୍' ପରି ସେ ଠିଆ ହୋଇଛନ୍ତି ମୋ'ର ବୌଦ୍ଧିକ ସଂଘର୍ଷରେ।

ଗତ ପୂଜା 'ବିଶ୍ୱମୁକ୍ତି'ରେ 'ପୁରସ୍କାର ପୋଷ୍ଟମର୍ଟମ' ପ୍ରକାଶ ପାଇଲା ପରେ ମୋତେ ଗୁଡାଏ ମାନସିକ ଚାପର ସମ୍ମୁଖୀନ ହେବାକୁ ପଡିଥିଲା। ଆମର ବରିଷ୍ଠ ଏବଂ ପ୍ରବୀଣ ଲେଖକମାନଙ୍କର ବିଚିତ୍ର ମୁହଁ ଓ ମୁଖାମାନ ଚିହ୍ନିବାର ଗୋଟେ ସୁଯୋଗ ଆସି ଜୁଟିଗଲା। ସେତେବେଳେ ଜନୈକ ପ୍ରଖର ଲେଖକ ମୋତେ କହିଥିଲେ- 'ବାବୁ, ନିଜ ଭବିଷ୍ୟତ ବିଷୟରେ ଭାବ ଓ ଲେଖାଲେଖି କର।' ମୁଁ ମନେ ମନେ ହସିଥିଲି - ସାହିତ୍ୟ ଓ ଭବିଷ୍ୟତ... ହାଃ... ହାଃ...। ଅନ୍ୟଜଣେ ଲେଖିକା ବାରମ୍ବାର ମୋତେ ଧମକଉଥିଲେ ଅଦାଲତକୁ ଟାଣିବା ପାଇଁ। ସେଇ ସମୟରେ ବିରକ୍ତିରେ ବିଜାର ଲାଗୁଥିବା ମନ ପାଇଁ ମୋ ପାଖରେ ଗୋଟିଏ ସାନ୍ତ୍ୱନା ଥିଲା, ଶରତବାବୁଙ୍କ 'ବୋଦାଙ୍କ ଦାଦାଗିରି ଓ ଅନ୍ୟାନ୍ୟ ପ୍ରବନ୍ଧ'। ସେଥିରେ ଶରତବାବୁ ଲେଖିଥିଲେ- 'କେଉଁ ସାହିତ୍ୟିକଙ୍କର ନିରବଚ୍ଛିନ୍ନ ସାଧନା ଫଳରେ ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ ସମୃଦ୍ଧ ହେଉଛି ସେ କଥାର ନିର୍ଣ୍ଣୟ ଓଡ଼ିଆ ଜାତି, ତା'ର ସାହିତ୍ୟିକ, ସାହିତ୍ୟପ୍ରେମୀ ଓ ପାଠକଙ୍କ ମାଧ୍ୟମରେ କରିବା ସ୍ୱାଭାବିକ ବିଷୟ। ଜଣେ ସାହିତ୍ୟିକଙ୍କର ସମଗ୍ର କୃତି ଓ ଅବଦାନକୁ ଆଖି ଆଗରେ ରଖି ତାଙ୍କର ଖଣ୍ଡେ ଭଲ ବହିକୁ ପୁରସ୍କାର ଦେବା ଶୋଭା ପାଆନ୍ତା। ମାତ୍ର ଦଲାଲ୍‌ମାନେ ସବୁ ସ୍ୱାଭାବିକ ପ୍ରକ୍ରିୟାକୁ ଓଲଟାଇ ଦିଅନ୍ତି। କୁଚକ୍ରୀ ଗୋଷ୍ଠୀ ବିଶିଷ୍ଟ ସାହିତ୍ୟିକଙ୍କୁ ଆଡେଇ ଦେଇ ଯାହାକୁ ଇଚ୍ଛା ତା' ମୁଣ୍ଡରେ ମୁକୁଟ ବାନ୍ଧୁଛି। ଏହାର ଗୋଟିଏ କାରଣ ପୁରସ୍କାର ପଦ୍ଧତି। ପଦ୍ଧତିଟି କୃତ୍ରିମ, ନିବୁଜ ଓ ଜାତିର ମତାମତ ସହ ଅସମ୍ପର୍କିତ। ପାରାସାଇଟ୍‌କୁ ଏହା ଖୁବ୍ ସୁହାଏ।' ସାହିତ୍ୟ ପୁରସ୍କାର ପ୍ରସଙ୍ଗରେ ଏତେ ସ୍ପଷ୍ଟ ଓ ସାହସିକ ମନ୍ତବ୍ୟ ପଢିଲାବେଳେ ମୋ' ମନରେ ସାହସ ଓ ଆତ୍ମବିଶ୍ୱାସ ଜନ୍ମୁଥିଲା।

ଗୋଟିଏ ଜାତିର ବୌଦ୍ଧିକ ବିଚାରକୁ କ୍ରିୟାଶୀଳ କରି ସାମାଜିକ ଜୀବନର ନୂଆ ନକ୍ସା ଅଙ୍କନ କରିବା ପାଇଁ ପ୍ରତିବଦ୍ଧତା ନଥିଲେ ଜଣେ ଲେଖକର ଭୂମିକା ଆଉ କିଛି ରହେ ନାହିଁ। ସେ 'ପାରାସାଇଟ୍'ର ପରିଚୟକୁ ନେଇ ବଂଚେ। ତେଣୁ ପାରାସାଇଟ୍ ନ ହେବା ପାଇଁ କି ତୀବ୍ର ଶରତବାବୁଙ୍କ ବାକ୍ୟ ସବୁ! ବୌଦ୍ଧିକତାର କଥା ତ ସେ କହିଛନ୍ତି ନିଶ୍ଚୟ, ବୌଦ୍ଧିକ ଛଳନାକାରୀଙ୍କୁ ପ୍ରଚଣ୍ଡ ଆକ୍ରମଣ ବି କରିଛନ୍ତି। ଏକଦା ଜଣେ ବନ୍ଧୁ ମୋତେ କହୁଥିଲେ, ଶରତବାବୁଙ୍କ ଟାଣପଣ ଯୋଗୁଁ ହିଁ ବହୁ ବିଳମ୍ବରେ ସେ ସାହିତ୍ୟ

ଏକାଡେମୀ ପୁରସ୍କାର ପାଇଲେ। ଯା' ହେଉ ପାଇଲେ ତ। ପୁରସ୍କାର ପ୍ରତ୍ୟାଖ୍ୟାନକୁ ନିଜର ଆଦର୍ଶ ଭାବରେ ଗ୍ରହଣ କରିଥିବା ଶରତ ବାବୁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଗ୍ରହଣ କଲେ ଅର୍ଥନୈତିକ ତାଡନାରୁ। ସାରଳା ପୁରସ୍କାର ପ୍ରତ୍ୟାଖ୍ୟାନ କଲାବେଳେ ସେ ଲେଖିଥିଲେ- 'କୌଣସି ଗୋଟିଏ ସାହିତ୍ୟ ପୁରସ୍କାର ଗ୍ରହଣ ନକରିବା ବଡ କଥା ନୁହେଁ। ଜଣେ ଲେଖକ ପକ୍ଷରେ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି, ପୁରସ୍କାର ଗ୍ରହଣ କରିବା ବା ନକରିବା ପଛରେ ଥିବା ମନୋବୃତ୍ତି। ପୁରସ୍କାର କ୍ଷେତ୍ରରେ ଚାଲିଥିବା ପ୍ରିୟାପ୍ରୀତି କାରବାରକୁ ଲେଖକ ନିନ୍ଦା କରୁଥିବ, ପୁରସ୍କାର କୁତ୍ସିତ ଆସନ ହେଲାଣି ବୋଲି କହି ବୁଲୁଥିବ ଅଥଚ ନିଜେ ପୁରସ୍କାର ପାଇଲେ ଗ୍ରହଣ କରିବ ଓ ସେତେବେଳେ ଯାଇଁ ନ୍ୟାୟ ବିଚାର ହେଲା ବୋଲି ସନ୍ତୋଷ ପ୍ରକାଶ କରିବ।' ସାହିତ୍ୟରେ ପୁରସ୍କାର ବ୍ୟବସ୍ଥା ବିରୋଧରେ ଜୀବନତମାମ୍ ସେ ସ୍ୱର ଉତ୍ତୋଳନ କରିଛନ୍ତି। ଓଡ଼ିଆ ସାହିତ୍ୟର 'ବୋଦା', 'ପାରାସାଇଟ୍' ଓ 'ଶାଶୂ'ମାନଙ୍କ ବିରୋଧରେ ପ୍ରତିବାଦର ସ୍ୱର ମଧ୍ୟ ତାଙ୍କର ଶାଣିତ। ଏଣୁ ଜୀବନତମାମ୍ ସେ ଶରତ ମହାନ୍ତି ହୋଇ ହିଁ ରହିଲେ। କେଉଁ ଗୋଷ୍ଠୀ ବା ଅନୁଷ୍ଠାନର ବଶ୍ୟତା ସ୍ୱୀକାର କଲେ ନାହିଁ। ନିଜ ମର୍ଜିରେ ଲେଖକୀୟ ଜୀବନଟିଏ ବଂଚିଲେ ଓ ଅକସ୍ମାତ୍ ପୃଥିବୀରୁ ବିଦାୟ ନେଇଗଲେ।

ଯେଉଁ ବ୍ୟବସ୍ଥା ଏବଂ ପ୍ରତିଷ୍ଠା ବିରୋଧରେ ସେ ଲେଖିଆସୁଥିଲେ, ସେଇ ବ୍ୟବସ୍ଥା ହିଁ ତାଙ୍କର ମୃତ୍ୟୁର କାରଣ ହେଲା। ଜଣେ ଅନ୍ୟମନସ୍କ ଡାକ୍ତରଙ୍କ ଅବହେଳାରୁ ସେ ମୃତ୍ୟୁବରଣ କଲେ ବୋଲି ତାଙ୍କର ଆତ୍ମୀୟମାନେ ଅଭିଯୋଗ କଲେ। ଶରତବାବୁ ବଂଚିଥିଲେ ଡାକ୍ତରଙ୍କ ଅବହେଳା ବିଷୟରେ ତୀବ୍ର କଟାକ୍ଷପାତ କରି ଚମତ୍କାର ପ୍ରବନ୍ଧଟିଏ ଲେଖିଥାନ୍ତେ ନିଶ୍ଚୟ। ସରକାରୀ ଚାକିରି ଓ ପ୍ରକାଶନ ସଂସ୍ଥା ସହ ଜଡିତ ଥାଇ ମଧ୍ୟ ସ୍ଥିତାବସ୍ଥା ସପକ୍ଷରେ କେବେ ବି ତାଙ୍କର କଲମ ଚାଲିନଥିଲା। ବ୍ୟବସ୍ଥାର ଖୁଣ ବାଛିବା, ବିଶୃଙ୍ଖଳା ପଛରେ ରହିଥିବା କାରଣ ଖୋଜିବା ଏବଂ ସମସ୍ୟାର ମୂଳ ମଂଜି ଆବିଷ୍କାର କରିବା ତାଙ୍କ ଲେଖାର ମୁଖ୍ୟ ଉଦ୍ଦେଶ୍ୟ ଥିଲା। ସମ୍ବାଦପତ୍ରରେ ତାଙ୍କର ନିୟମିତ କଲମ ସବୁରେ ତଥାକଥିତ ଆବୁଜାବୁ ଲେଖା ନଥିଲା ଜମାରୁ। ସାଧାରଣ ଜନତାର ଭାଷାରେ ଗଭୀର ତତ୍ତ୍ୱର ସରଳ ବିଶ୍ଳେଷଣ ସେ କରୁଥିଲେ। ପ୍ରଖ୍ୟାତ ଗଣିତଜ୍ଞ ଏବଂ ଦାର୍ଶନିକ ବର୍ଟ୍ରାଣ୍ଡ ରସେଲ୍‌ଙ୍କ ମୃତ୍ୟୁ ପରେ ୧୫.୦୬.୧୯୭୦ ଦିନ 'ପ୍ରଜାତନ୍ତ୍ର'ରେ ସେ ଲେଖିଥିଲେ- "ବର୍ଟ୍ରାଣ୍ଡ ରସେଲ୍ ଯେବେ ମରିବେ ବୋଲି ଭବିଷ୍ୟବାଣୀ କରିଥିଲେ ତା'ଅପେକ୍ଷା ପ୍ରାୟ ଆଠବର୍ଷ ଅଧିକ ବଂଚି ପୃଥିବୀରୁ ବିଦାୟ ନେଲେ। ୧୯୬୨ ଜୁନ୍ ପହିଲାରେ ସେ ଇହଧାମ ତ୍ୟାଗ କରିବେ ବୋଲି ଭବିଷ୍ୟବାଣୀ କରିଥିଲେ। ତା'ଅପେକ୍ଷା

ପ୍ରାୟ ଆଠବର୍ଷ ଅଧିକ ବଂଚି ପୃଥିବୀରୁ ବିଦାୟ ନେଲେ। ୧୯୬୨ ଜୁନ୍ ପହିଲାରେ ସେ ଇହଧାମ ତ୍ୟାଗ କରିବେ ବୋଲି ୧୯୩୭ରେ ସେ ଲିସ୍‌ନର୍‌ରେ ଲେଖିଥିଲେ। ତାଙ୍କ ମୃତ୍ୟୁରେ ଟାଇମ୍‌ସ କାଗଜରେ କ'ଣ ସମ୍ବାଦ ବାହାରିବ ତାହା ମଧ୍ୟ ସେ ଉକ୍ତ ଲେଖାଟିରେ ଲେଖିଥିଲେ। ରସେଲ୍‌ଙ୍କ ବ୍ୟକ୍ତିତ୍ୱକୁ ନିଜର ମୃତ୍ୟୁ ସମ୍ବାଦ କିପରି ବାହାରିବ ତାହା ଲେଖିବା କାର୍ଯ୍ୟଟି ଖାପ୍ ଖାଇଥାଏ। ଏହି ତାରିଖଟି ଅତୀତ ହେବା ପୂର୍ବରୁ ମୋ'ର ବେଳେବେଳେ ଆଶଙ୍କା ହେଉଥିଲା, କୌତୁକରେ କରିଥିବା ଭବିଷ୍ୟବାଣୀଟି ସତ୍ୟ ହୋଇଯିବ ନାହିଁ ତ ? ମୋ'ର ଅନୁମାନ, ପୃଥିବୀ ସାରା ଅନେକ ଲୋକଙ୍କର ଏହିପରି ଅନୁଭବ ହୋଇଥିବ। ମାତ୍ର ଭାଗ୍ୟବାନ ରସେଲ୍‌ଙ୍କୁ ଯମ ତାଙ୍କର ପ୍ରତ୍ୟାଶା ଅପେକ୍ଷା ପ୍ରାୟ ଆଠବର୍ଷ ଅଧିକ ଏ ପୃଥିବୀରେ ରଖିଲେ।' ରସେଲ୍‌ଙ୍କ ପରି ମହାନ୍ ଦାର୍ଶନିକଙ୍କ ମୃତ୍ୟୁ ପରେ ଏମିତି ଏକ ଶୋକର ଆଲେଖ୍ୟ ଶରତବାବୁ ହିଁ ଲେଖିପାରନ୍ତି।

'ସଂସ୍କୃତି ଅପସଂସ୍କୃତି', 'ବୋଦାଙ୍କ ଦାଦାଗିରି ଓ ଅନ୍ୟାନ୍ୟ ପ୍ରବନ୍ଧ', 'ଏଣୁତେଣୁ କିଛି', 'କେରିୟରିଷ୍ଟ ଓ ସାହିତ୍ୟ ଚାଷ ପ୍ରସଙ୍ଗ', 'ବିବର୍ତ୍ତନଶୀଳ ମଣିଷର ସଂଗ୍ରାମ' ଇତ୍ୟାଦି ବହିମାନଙ୍କର ଚଳନ୍ତି ସମାଜ ବ୍ୟବସ୍ଥା ପ୍ରତି ତାଙ୍କର ଅନାସ୍ଥାସୂଚକ ମନ୍ତବ୍ୟକୁ କେହି କେହି ଜଣେ ସିନିକ୍‌ର ଦୃଷ୍ଟିଭଙ୍ଗୀ ବୋଲି ଭାବିପାରେ। ଗ୍ରୀକ୍ ଦର୍ଶନର ସିନିସିଜମ୍ ପରି ପ୍ରତ୍ୟେକ ନାହିଁ ଭିତରେ 'ହଁ'କୁ ତଲାସ୍ କରିବାର ଗୁରୁଦାୟିତ୍ୱ ସେ ବହନ କରିଥିଲେ। ଛୋଟ ଛୋଟ କଥା ତାଙ୍କୁ ବ୍ୟଥିତ କରୁଥିଲା। ସ୍ପଷ୍ଟ ଭାବରେ ସେ ଉଲ୍ଲେଖ କରୁଥିଲେ ତାଙ୍କର ଭଲ ପାଇବା ଓ ଭଲ ନପାଇବାର କାରଣମାନ। ବାଆଁରେଇ ଦେବା ତାଙ୍କ ଜାତକରେ ନଥିଲା। ଗୋଟେ ଛୋଟ ଝିଅ କେଉଁଠୁ ଗୀତ ଗାଇ ପୁରସ୍କାର ପାଇଲା, ଗୋଟେ ପ୍ରାଥମିକ ବିଦ୍ୟାଳୟରେ କ'ଣ ସବୁ ଘଟିଲା ଇତ୍ୟାଦି ଛୋଟ ଛୋଟ ପ୍ରସଙ୍ଗରେ ସେ ଆମ ସମାଜର ମୌଳିକ ସମସ୍ୟାମାନ ଆବିଷ୍କାର କରୁଥିଲେ। କେବଳ ସମାଲୋଚନା କରିବା ପରି ନିହିଲିଷ୍ଟ ସେ ଜମାରୁ ନଥିଲେ। ଗାନ୍ଧୀଙ୍କ ପରି ରଚନାତ୍ମକ ସାଧନାରେ ତାଙ୍କର ଦୃଢ ବିଶ୍ୱାସ ଥିଲା। 'ଗାନ୍ଧି ମଣିଷ' ରଚନା କଲାବେଳେ ସେଥିପାଇଁ ବୋଧେ ସେ ଥିଲେ ବେଶ୍ ଭାବପ୍ରବଣ। ଗାନ୍ଧିଜୀ ତାଙ୍କ ଅନ୍ତରର ଛାଇ ହେଇ ରହିଥିଲେ। ଗାନ୍ଧିବାଦକୁ ଗାନ୍ଧିବାଦର ଗୁଳା ଭିତରେ ରହି ସେ ଦେଖିନାହାନ୍ତି। ଗାନ୍ଧିଙ୍କୁ ଭଲ ପାଉଥିବା ଜଣେ ନାଗରିକ ଭାବରେ ସେ ତାଙ୍କର ବ୍ୟକ୍ତିତ୍ୱର ଆକଳନ କରିଛନ୍ତି।

ବୌଦ୍ଧିକତାର ବ୍ୟାପ୍ତି, ବିଚାରର ସ୍ୱଚ୍ଛତା ଏବଂ ଜୀବନବୋଧର ସରଳତା, ମୋ ମତରେ ଶରତ ମହାନ୍ତିଙ୍କର ପରିଚୟ। ତାଙ୍କରି ପ୍ରୟାଣ ଏକ ଅସରନ୍ତି ଶୂନ୍ୟସ୍ଥାନର ଅୟମାରମ୍ଭ। ସେ ଶୂନ୍ୟସ୍ଥାନ ଆମ ପ୍ରବନ୍ଧ ସାହିତ୍ୟର। ଅନେକ ସମୟରେ ଆଜିର

ଓଡ଼ିଆ ସାହିତ୍ୟ ପରିବେଶ ଲାଗେ ଭୀଷଣ ଅଣନିଃଶ୍ୱାସୀ। ପ୍ରତିକୂଳ ସମାଲୋଚନାକୁ ସହ୍ୟ କରିବା ପାଇଁ ଆମର ସାହିତ୍ୟିକମାନେ ଟିକେବି ପ୍ରସ୍ତୁତ ନୁହଁନ୍ତି। ସ୍ତବ ଓ ସ୍ତୁତି ଶୁଣିବା ପାଇଁ ଅଭ୍ୟସ୍ତ କାନମାନଙ୍କ ପାଇଁ ଶରତ ବାବୁଙ୍କର ବ୍ରହ୍ମଶର ଆଜି ନିରବ। ତେବେ ଏହି ନିସ୍ତରଙ୍ଗତା କ'ଣ ବଜାୟ ରହିବ ସବୁଦିନ ପାଇଁ? ପୂର୍ବରୁ ମୁଁ କହିଛି ପୁରସ୍କାର ପ୍ରସଙ୍ଗରେ ଗୋଟିଏ ପ୍ରବନ୍ଧ ଲେଖି ମୋତେ ହଜାର ମାନସିକ ଯାତନାର ଶିକାର ହେବାକୁ ପଡିଛି। ଗୋଟେ ଖରାପ ବହିକୁ ଖରାପ ବୋଲି କହି ବହୁ ଧମକ ଚମକ ଶୁଣିଛି। ସେମିତି ଏକ ପରିସ୍ଥିତିରେ ଶରତବାବୁଙ୍କ ବିଷୟରେ ଲେଖିଲା ବେଳକୁ ମନରେ ଦମ୍ଭ ଆସୁଛି। ଲାଗୁଛି ଏବେ ବି ସତ କହିବା ପାଇଁ, ସ୍ପଷ୍ଟ ଭାବରେ କହିବା ପାଇଁ ଶରତବାବୁ ଆମକୁ ପ୍ରେରିତ କରୁଛନ୍ତି। ସାହତ୍ୟିକର ଅନ୍ଧ ଅହମିକା ଅପେକ୍ଷା ଏକ ଗଣତାନ୍ତିକ ଜୀବନବୋଧ ବିଷୟରେ ସେ ଆମକୁ ସଚେତନ କରୁଛନ୍ତି। ଜଣେ ତରୁଣ ଲେଖକ ଭାବରେ ତାଙ୍କରି ଅବର୍ତ୍ତମାନରେ ଆଜି ମୁଁ ତାଙ୍କଠୁ ସାହସ ଓ ବିବେକର ବାର୍ତ୍ତା ପାଉଛି। ସେଇୟା ହିଁ ଶରତ ମହାନ୍ତିଙ୍କର ଚିରନ୍ତନ ଉପସ୍ଥିତିର ପ୍ରମାଣ।





କେଦାର ମିଶ୍ର
୧୫ ଏପ୍ରିଲ୍ ୧୯୭୨ରେ ଜନ୍ମ ସୋନପୁର ସହରରେ
ବାପା: ସ୍ୱର୍ଗତ ଶମ୍ଭୁପ୍ରସାଦ ମିଶ୍ର
ମା: ଶାନ୍ତି ମିଶ୍ର
ଓଡ଼ିଆ ସାହିତ୍ୟର ଛାତ୍ର

୧୯୯୦ରୁ ଓଡ଼ିଆ କବିତାର ଜଣେ ନିୟମିତ ଲେଖକ । ଜଣେ ସଫଳ ଗଦ୍ୟସ୍ରଷ୍ଟା, ଗବେଷକ, କଳା ସମୀକ୍ଷକ ଓ ସାମ୍ବାଦିକ ଭାବରେ ତାଙ୍କର ସ୍ୱତନ୍ତ୍ର ପରିଚୟ ରହିଛି ।

ପ୍ରକାଶିତ ପୁସ୍ତକ:
ଶବ୍ଦକୁ ଚାରିପାଦ (୨୦୦୦)
ଆଶା-ସୂକ୍ତ (୨୦୦୦)
ଶୂନ୍ୟ ଅଭିସାର (୨୦୦୩)
Bhima Bhoi: Verses from The Void

cover design: s a r o j b a l